ନନ୍ଦ କିଶୋର ବଳ, ୧୯୦୧

# ବସନ୍ତ କୋକିଳ ।

## ନବ ଶତାବ୍ଦିର ନିମନ୍ତ୍ରଣ ।

ଉତ୍କଳ-ଆକାଶେ ନବ ଦିନମଣି
'ଉଠ ନିଦ୍ରା ତେଜ ଭାଇ,
ଅରୁଣ-ଗଗନେ ଉଡୁଣି କେତନ,
ଯାମିନୀ ଯାଇଛି ପାହି ।
ନବୀନ, ଶତାବ୍ଦୀ ନବ ନିମନ୍ତ୍ରଣ
ଆଣିଛି ଉତ୍କଳପାଇଁ,
ଜଗତ ଆହ୍ୱାନ ଶୁଭଇ ଦୁଆରେ
ନ ଶୁଅ ନ ଶୁଅ ଭାଇ ।
ଚଞ୍ଚଳ ଉଚ୍ଛଳ କଳ କୋଳାହଳ
ଚୌଦିଗେ ଶୁଭେ ଭୋଳି,
କାଳନିଦ୍ରା ତେଜି ଅନର୍ଘ୍ୟ ବରଜ
ଆସ ଆସ ଦ୍ୱାର ଖୋଲି ।
ଅଛି ଇତିହାସ ଅଛି ଶିଳ୍ପ କଳା
ଅଛି ଅତୀତ ବିଭବ,

ଆଳସ୍ୟ ତେଜଣ ଲଭ ଜ୍ଞାନ ଧର୍ମ
ଫେରାଅ ପୂର୍ବ ଗୌରବ ।
ପିତୃ ପିତାମହ ଅକ୍ଷୟ କୀରତ
ରଖି ଯାଇଛନ୍ତି ଗୁଲ,
ତାହାର ଉନ୍ନତ ନ କରଣ କର୍ଯା
ହେଉଅଛ ନାମ ଖାଲି ?
ଏହି ଦେଶେ ଜନ୍ମି କବସୂର୍ଯ୍ୟ ଉପେ
ଦୀନକୃଷ୍ଣ ଆଦି କବ
ରଚି ଯାଇଛନ୍ତି ଉତ୍କଳ ମାତାଙ୍କ
ଅହା କି ବରେଣ୍ୟ ଛବ !
ଏକାମ୍ରେ କୋଣାର୍କେ ଚନ୍ଦ୍ରଭାଗାତଟେ
ତବ ପିତୃ ପିତାମହ
ନୀଳାଚଳେ ଯେଉଁ କୀର୍ତ୍ତି ରଖିଛନ୍ତି
ଦେଏ ତୃପ୍ତି ମନେ ବସୁନ୍ଧ ।
ଏହି ଦେଶେ ଜନ୍ମି ମର୍କଟ କେଶରୀ
ବାନ୍ଧିଲେ ପାଷାଣ ସେତୁ
ଯଯାତି ଲଲାଟ ତୋଳି ମନ୍ଦରାଦ୍ରି
ଉଡ଼ାଇଲେ କୀର୍ତ୍ତି-କେତୁ ।
ଏହି ଦେଶେ ଆସି ବୁଦ୍ଧ-ଶିଷ୍ୟଗଣ
ଉଡ଼ାଇଲେ ସାମ୍ୟଧ୍ୱଜା,

କନ୍ଦରେ କନ୍ଦରେ ଲେଖିଲେ ଆଦେଶ
ଅଶୋକ ଧାର୍ମିକ ରାଜା ।
ଧଉଳି-ଲଳିତ- ଅନନ୍ତ-ଉଦୟ
ଖଣ୍ଡଗିରି ଅଦ୍ୟ ଚିର
ଅତୀତ ଗୌରବ ମୂକ ସାକ୍ଷୀ ରୂପେ
ପ୍ରକାଶନ୍ତି ପୂର୍ବ ଶିରୀ ।
ପଞ୍ଚ ସଖା ଆଦି କେତେ କେତେ ସାଧୁ
ଜନମି ଏହି ଉତ୍କଳ
ତେଜ ସ୍ନିଗ୍ଧ ଦ୍ୱାରା ରାଜ୍ୟ ପରିବାର
ନାଚୁଥିଲେ ଦଳେ ଦଳେ ।
କପିଳେନ୍ଦ୍ର ଦେବ ଶ୍ରୀ ପୁରୁଷୋତ୍ତମ
ପ୍ରତାପରୁଦ୍ର ନୃପତି
ଟେକିଲେ ତ୍ରିବେଣୀ- କାଞ୍ଚୀ-ସେତୁବନ୍ଧେ —
ଗଉଡ଼େ କର୍ଣ୍ଣାଟେ ଛତ୍ର ।
ଅଛି ସେହି ଦେଶ ସେହି ଗିରି ନଦୀ
ସେହି ବିଶାଳ ଗଗନ,
ଶୋକ-ଅବସାଦ- ଜଡ଼ିମା-ଜଡ଼ିତ
କିପାଇଁ ଓଡ଼ିଆ-ମନ !
ଜାତିବିଦ୍ୱେଷ ଘୃଣା କାହିଁ ସ୍ଥାନ ହିଂସା
କାହିଁ ଭିନ୍ନ ଭିନ୍ନ କଥା,

କହାଁ ବନ୍ଧୁଦୃଷ୍ଟି  କହାଁ ଦ୍ୱେଷ-ବୃଷ୍ଟି !
ଉଠାଅ ହଳଖେ ମଥା ।
ସଙ୍କୀର୍ଣ୍ଣତା-ପଙ୍କେ  କହିଁ ଲୋଟପୋଟ
ଆସ ଯିବା ରାଜପଥେ,
କ୍ଷୁଦ୍ର ସୀମା ବାନ୍ଧି  ଅଲଗା ଅଲଗା
କହିଁ ଭାଇ ଭାଇ ମଧ୍ୟେ !
କୂପଭେକ ପ୍ରାୟ  କ୍ଷୁଦ୍ର ଅଭିଜାତ୍ୟ
କହାଁ ଅଛ ବୁଡ଼ି ଭାଇ !
ଉଦାର ଆକାଶ  ପ୍ରକଟେ ବରଜେ
ଦେଖ ଦେଖ ଉର୍ଦ୍ଧ୍ୱେ ଚାହିଁ ।
ବିଶ୍ୱପାଖିଦଳ  କରି କୋଳାହଳ
ବିଶ୍ୱଗୀତ ଉଠେ ଗାଇ
ଯାଉଛନ୍ତି ଅହ୍ନା  ଉନ୍ନତି-ପଥରେ,
ଚାଲ ସାଥୀ ହେବା ଭାଇ ।
ତେଜ କ୍ଷୁଦ୍ର ଦ୍ୱେଷ  ଲଭ ହିଂସାନଳ
ଭୁଲ ନୀଚ ଅଭିମାନ,
ଭାଇ ଭାଇ ହୋଇ  ହାତ ଧରାଧରି
କରି ମହା-ଅଭିଯାନ ।
ଜଙ୍ଗଲ-ଦୁଆରେ  ଶୁଭୁଛି ଶବଦ
ଶୁଣ ଶୁଣ ଡେରି କର୍ଣ୍ଣ,

ନିଖିଳ ଜଗତ ପଠାଇ ଅଛନ୍ତି
ମହାଦରେ ନିମନ୍ତ୍ରଣ ।
ନବୀନ ଶତାବ୍ଦୀ ନବ ନିମନ୍ତ୍ରଣ
ଆଣିଛି ଉତ୍କଳ ପାଇଁ,
ଜଗତ-ଆହ୍ୱାନ ଶୁଭଇ ଦୁଆରେ
ଉଠ ନିଦ୍ରା ତେଜ ଭଇ ।

—:✣:—

## ଶ୍ରୀକ୍ଷେତ୍ର ।

ଏହି ସେହି ପୁଣ୍ୟକ୍ଷେତ୍ର ! ଯା ଦର୍ଶନପାଇଁ
ଦିଗଦିଗନ୍ତରୁ ଯାତ୍ରୀ ଆସୁଛନ୍ତି ଧାଇଁ ।
ଏହି ସେହି ଶଙ୍ଖକ୍ଷେତ୍ର ନୀଳାଦ୍ରିକନ୍ଦର,
ଚଉଧାମ ମଧ୍ୟେ ଯାହା ଶ୍ରେଷ୍ଠ ତୀର୍ଥବର ।
ଏହି ସେହି ପୂଜ୍ୟ ପୂର୍ବ-ପ୍ରଧାନ ପୁରାଣ,
ଶୋଭାବତୀ ଉତ୍କଳର ସୁଷମା-ଉଦ୍ୟାନ ।
ଏହି ସେହି ନୀଳାଚଳ ଯାହାର ଚରଣେ
ଧୌତ କରେ ନୀଳ ସିନ୍ଧୁ ଗମ୍ଭୀର ସ୍ୱନେ ।
ଏହି ସେ ନଗର ପୁରାତନ ପୁଣ୍ୟଶ୍ଲୋକ
ଗୀର୍ବାଣ ଯାହାର ଖ୍ୟାତ ଏ ଭାରତଲୋକ ।

ଏହି ସେହି ପୁଣ୍ୟ ତୀର୍ଥ ନୀଳାଚଳଧାମ,
ଶୈଶବ-ସ୍ମୃତିର ସଙ୍ଗେ ଜଡ଼ିତ ଯା ନାମ ।
ନରେନ୍ଦ୍ର-ସରସୀ ଏହି ପଦ୍ମବନ୍ଧଲ୍ଲିକା,
ଯା ନୀରେ କରନ୍ତି ସ୍ନାନ ଶ୍ରୀକ୍ଷେତ୍ର-ମହିଳା ।

ଏହି ସେହି ବଡଦାଣ୍ଡ ଉଦାର ପ୍ରଶସ୍ତ
ଶାରଦ ଗଗନେ ଯେସନ୍ତ ଶୋଭେ ଛାୟାପଥ ।
ଏହି ସେହି ଜଗନ୍ନାଥ-ସୁତୁଙ୍ଗ-ମନ୍ଦିର
ପ୍ରତଭ-ବଜସ୍ଥ-ସ୍ତମ୍ଭ ଉଚ୍ଚକବାହିର ।
ଏହି ସେହି ପବିତ୍ର ଭୂମି ଯାହାର ଅତୀତ—
ଗୌରବ ସ୍ମରଣ ହୃଏ ଚିତ୍ତ ବ୍ୟାକୁଳିତ ।
ପ୍ରବଳ ହୃଦୟାବେଗ ଦୁର୍ବଳ ଲେଖନୀ,
କେସନେ ବର୍ଣ୍ଣିବ ସେହି ପୁରାଣ କାହାଣୀ !
ଥିଲେ ଧନ ଯେତେବ ଭଗ୍ୟବନ୍ତ ଏ ଉତ୍କଳ;
ହୋଇଛି କେସନ ହୀନ ପତିତ ଦୁର୍ବଳ !
ବଜ୍ର କେଶରୀ-ଗଙ୍ଗ-ବଂଶୀୟେ ଶାସନ
କରି, କଲେ କେତେ ପୁଣ୍ୟ କୀର୍ତ୍ତି ସ୍ଥାପନ ।
ମହାନଦୀ-କାଠଯୋଡ଼ୀ-ତୀରେ ଶିଳାଚୟରୁ
ବାନ୍ଧି, ଉଡ଼ାଇଲେ ବର୍ଷେ ପ୍ରତିଦ୍ୱନ୍ଦ୍ୱ କେତୁ ।
ଶ୍ରୀକ୍ଷେତ୍ର-ଏକାମ୍ର-ଯାଜପୁର-କୋଣାର୍କରେ
ଶଙ୍ଖ-ଚକ୍ର-ଗଦା-ପଦ୍ମ ଗୃହ କ୍ଷେତ୍ରବରେ

ସ୍ଥାପିଣ, ଉତ୍କଳ-କୀର୍ତ୍ତି-ସ୍ତମ୍ଭ ସଂସ୍ଥାପନ
କରି, ଉଡ଼ାଇଲେ ଶିଳ୍ପକଳାର କେତନ ।
ଏହି ମହୋଦଧି-ତଟୁଁ କରି ଜଳଯାତ୍ରା
ବାହଣ ବୋଇତ ବାଲି ଯାବା ଓ ସୁମାତ୍ରା,
ଉତ୍କଳ-ବଣିକବର୍ଗ ବାରଧି-ବକ୍ଷରେ
ବାଣିଜ୍ୟ କରିଲେ ଯାଇଁ ଦ୍ୱୀପଦ୍ୱୀପାନ୍ତରେ ।
ସେହି ଦେଶେ ଅଛ ଆହା ପୋତ-ଅନ୍ୱେଷଣ
ହୁଏ ବଙ୍ଗେ ଶତ ଜାତ-ନାଶର କାରଣ !
ଜମ୍ବୁଲବ୍ଧା କାଞ୍ଚୀରାଜକନ୍ୟା ପଦ୍ମାବତୀ
ଏହିଠାରେ ରଣପୋତୁଁ ଓହ୍ଲାଇଲେ ସତୀ ।
ଏ ସିନ୍ଧୁ-ପୁଳିନୁ ଛାଡ଼ି ପୋତ ଓଡ଼ିଆଏ
ଯାଉଥିଲେ ଜଳଯାନେ ତମ୍ରଲୁକଯାଏ ।
ଦାକ୍ଷିଣାତ୍ୟେ କାଞ୍ଚୀ ସେତୁବନ୍ଧରାମେଶ୍ୱର,
ଉତ୍ତରେ ତ୍ରିବେଣୀ ତମଲୁକ ଅଧିକାର
କରିଥିଲେ ଉତ୍କଳୀଏ, ଆହା କ ପ୍ରକାରେ
ସେ ସ୍ମୃତି ଉଭେଇ ଗଲା ବୁଦ୍‌ବୁଦ ଆକାରେ !
ଉତ୍କଳ-କୈବର୍ତ୍ତେ ଜୟ କଲେ ଯେଉଁ ଦେଶ,
ସେହି ଦେଶ କହେ ଅଦ୍ୟ "ଉତ୍କଳୀଏ ମେଷ" !
ଅଛି ସେ ନୀଳାଦ୍ରି, ଅଛି ଜଳଧି-ପୁଳିନ,
ସେ ଅଦମ୍ୟ ମନୁଷ୍ୟତା ହେଲା କାହିଁ ଲୀନ !

ବଜଦୃ-ଗମନେ ଏଠାରୁ ବୀରଗଣ
ଯାହା କର ଦୃଗଞ୍ଚଳେ ଅସଂଖ୍ୟ ଯବନ ।
ଶତ ଶର୍ତ୍ତ ବର୍ଷ ଗତ ଗଲା, ଶତ୍ରୁ ଥାଟ
ଭାଙ୍ଗି ନ ପାରିଲେ ଓଡ଼୍-କୃପାଣ-କପାଟ ।
ଅହିଂସା ପରମ ଧର୍ମ—ପ୍ରଚାରକ ବୁଦ୍ଧ
ସ୍ଥିତ ଅବତାରରୂପେ ନବମ ବଉଦ୍ଧ ।
ପୌରେନ୍ଦ୍ରତ୍ୟ-ଅତ୍ୟାଚାର ଜାତ-ଅଭିମାନ
ବୌଦ୍ଧ ଧର୍ମ କରିଥିଲା ଏଥି ଅବସାନ ।
ହିନ୍ଦୁ-ବୌଦ୍ଧ-ସମନ୍ୱୟ-ଭୂମି ନୀଳାଚଳ,
ଯା ଲାଗି ଭାରତେ ଧନ୍ୟ 'ଦରିଦ୍ର ଉତ୍କଳ ।
ଏତେ ସ୍ମୃତି ସ୍ମୃତ ଯହିଁ ଉଦିତ ମାନସେ,
ପ୍ରଣମ ସମ୍ଭ୍ରମେ ପ୍ରିୟ ସେ ତୀର୍ଥ ଉଦ୍ଦେଶେ ।

—✽—

# ବନପ୍ରିୟ ।

We look before and after,
And pine for what is not;
Our sincerest laughter
With some pain is fraught:
Our sweetest songs are those
That tell of saddest thought.
*To A Sky Lark —P. B. Shelley.*

---

ଋତୁରଙ୍ଗ-ଅଙ୍ଗନେ          ବସନ୍ତ-ଆଗମନେ
ଏ ବିଶ୍ୱେ ବିମୋହିତ କର
ବସି ପତ୍ର ଗହ୍ୱରେ          ମଧୁକଣ୍ଠ ରନ୍ଧ୍ରେ
ଢାଳୁଛରେ ପଞ୍ଚମ-ଲହରୀ;
କୁହରୁ ପିକ ଘନ ଘନ,
ଶୁଭଇ କୁହୁ କୁହୁ ଧ୍ୱନି,
ଶୁଣନ୍ତେ ତୋ ଗାୟନ          ବିକଳ ପ୍ରାଣ ମନ
ବିଚ୍ଛେଦ-ବିଦଗ୍ଧ ମୋହର ରେ ବନପ୍ରିୟ । ୧ ।
କାହିଁ ତୁ ଅଛି ଉଡ଼ି          ଏନ୍ଦଗନ୍ଧରେ ବୁଡ଼ି
ସ୍ୱପ୍ନର ମଧୁର ସ୍ୱଦେଶ
ଫେଡ଼ି ହୃଦୟଦ୍ୱାର          ଝଙ୍କାରୁ ବାରମ୍ବାର ?
ତୋ ସ୍ୱନ ଭେଦେ ହୃଦଦେଶ;

ସ୍ୱଦେଶୁଁ ମୋ ହୃଦୟ-ରାଣୀ
ପଠାଇଛନ୍ତି କିବା ବାଣୀ ?
ତୋ ଗାନ ଧ୍ୱନି ସ୍ୱନେ  ମୋ ମାୟାମୁଗ୍ଧମନେ
ହୁଅଇ ବିରହ-ଆବେଶ । ୨ ।

କରେ ତୋ ସୁଧା-ସ୍ୱନ  ଅତୀତ-ଉଦ୍‌ବୋଧନ,
କି ଅର୍ଥ ଅଛି ସେ ସୁଧାରେ !
ବଜାଏ ତୋର ଗୀତ  ବିରହର ସଙ୍ଗୀତ
ମୋ ହୃଦତନ୍ତ୍ରୀବୀଣାତାରେ;
ଆହା କି ମଧୁର ସେ ଧ୍ୱନି !
ଭାବୁକ-ହୃଦ-ସ୍ପର୍ଶମଣି,
ଶୁଣି ତୋ କୁହୁ-ସ୍ୱନ  ଉଦାସ ପ୍ରାଣ ମନ
ବିବଶ ବିଷାଦର ଭରେ । ୩ ।

ଉନ୍ମାଦଭରା ଧ୍ୱନି  ଶୁଣି ମତ୍ତ ଧରଣୀ
କି ମନ୍ତ୍ରପୂତ ଗାଇ ଗାନ,
କି ମାଧୁରୀ ସ୍ୱର୍ଗର  ବିକାଉଛି ତୋ ସ୍ୱର
ଲଳିତ ପଞ୍ଚମ-ସୁତାନ ?
ଶୁଣି ତୋ ଗୀତ ସୁଧାମୟ
ବହଇ ସୁମନ୍ଦ ମଳୟ,
କଅଁଳେ କୁଶଳୟ  କିବା ବିକ୍ରମାମୟ !
ଉଲୁସି ଉଠେ ବୃକ୍ଷପ୍ରାଣ । ୪ ।

ସୁଲଳିତ ପଞ୍ଚମ          ଅହ୍ନା କ ମନୋରମ
ଅମୃତ ଝରିଣ ମଧୁର !
କପାଇଁ ଢାଳୁ ସୁଧା          ବଢ଼ାଇ ପ୍ରାଣକ୍ଷୁଧା ?
ନିଖିଳ ସୁଖ ଦୁଏ ଜୁର;
ପ୍ରବେଶି ସେ ସୁଧା ମୋ କାନେ
ଦୁଃସହ ବିଷ ଢାଳେ ପ୍ରାଣେ,
ପିଇ ଅମୃତ ତୋର          ଜଳଇ ହୃଦ ମୋର
ମୋ ପ୍ରିୟା-ବିରହେ ବିଧୁର । ୫ ।

ଶାନ୍ତ ସୁନ୍ଦର ନୀଳ          ଆକାଶରେ କୋକିଳ,
ମୋ ବୋଲ ଦିକି କି ଶୁଣିବୁ,
ଘର ଗ୍ରାମ ନଗର          ହ୍ରଦ ତଟିନୀ ସର
ଗିରି କାନନ ଡେଇଁ ଯିବୁ ?
ମୋହବୁ ଢାଳି ଗୀତମଧୁ
ପ୍ରୋଷିତ-ଜନ-ନବ-ବଧୂ,
ସ୍ୱକାନ୍ତ-ପ୍ରଣୟିନୀ          କଙ୍କଣ କିଣିକିଣି
ନେତ୍ର ଉଦ୍ଧୃଷ୍ଟ କରାଇବୁ । ୬ ।

ପିକ ତୁ ଉଡ଼ିଯିବୁ          ପ୍ରିୟା ପାଶେ ସବରୁ
କଠିନ ପ୍ରାଣ ତରଳିବ,
ତୋ ରବ ଶୁଣି ମିତ          ରୋଇ କରୁଣଚିତ୍ତ
କ୍ଷଣେ ବା ମୋ କଥା ଭାଳିବ;

କହିଲେ ଉଦନ୍ତ ଦେଜରୁ,
ଢାଳେ ତୁ ବାହୁଡ଼ ଅଶ୍ରୁ,
ଶୁଣିଣ ତୋ ସନ୍ଦେଶ        ତୁଟିବ ମୋ ସନ୍ଦେହ,
ମୋ ଜନ୍ମ ସାର୍ଥକ ହୋଇବ ରେ ବନପ୍ରିୟ । ୭ ।

---

## କୋକିଳ ପ୍ରତି ।

---

ହେ ନବୀନ ଅତିଥି ସଦା-ଅନନ୍ଦ,
ଶୁଣନ୍ତେ ତବ ସ୍ୱନ ମନ ପାନନ୍ଦ ।
ରେ ବନପ୍ରିୟ ଅଟୁ ତୁ ବ୍ୟୋମଗାମୀ,
ଅବା ଶିଖିବିଶେଷ ଭ୍ରମଣକାରୀ ?
ତୃଣ ଉପରେ ଯେବେ କରେଁ ଶୟନ,
ଶୁଭଇ "କୁହୁ" "କୁହୁ" ଉଚ୍ଚ ନିସ୍ୱନ;
ଯାଏ କି ପର୍ବତରୁ ପର୍ବତାନ୍ତରେ
ଏକାବେଳକେ ପାଶେ ପୁଣି ଅନ୍ତରେ ?
ଯଦବା ଗହ୍ୱରୁଙ୍କା ପ୍ରତ୍ୟୁନନ୍ତ
କରି, ଗାଅ ଅଲୌକ-କୁସୁମ-ଗୀତ,
ତୋ ଗୀତି ଶୁଣି ମୋର ହୁଏ ସ୍ମରଣ
ଶୈଶବ-ବାର୍ତ୍ତା ସ୍ୱପ୍ନାବେଶ-ଅଛନ୍ନ ।

ସ୍ୱାଗତ ହେ ବସନ୍ତ-ସଖା ଏବାରେ !
ସାମାନ୍ୟ ପକ୍ଷୀ ତୁହି ନୋହୁଁ ମୋଠାରେ,
ଅଦ୍ୟାପି ତୁହି ମାତ୍ର ବସ୍ତୁ ଅଦୃଶ୍ୟ,
କେବଳ ବାଣୀ ଅବା ଗୂଢ଼ି ରହସ୍ୟ ।
ମୋ ଶୈଶବକାଳରେ—ଏହି ସେ ସ୍ୱନ—
ଯାହା ଶୁଣି ମୁଁ ଡେରୁଥିଲି ଶ୍ରବଣ
ସହସ୍ରବାର ଏଣେ ତେଣେ ଅନାଇ
କୁଞ୍ଜବିଟପି-ନୀଳଗଗନେ ଚାହିଁ ।
ବୁଲୁଥିଲି ମୁଁ ତୋତେ ଲୋଡ଼ିବାପାଇଁ
କାନନ-ପ୍ରାନ୍ତରକୁ ନିଭୃତ ଯାଇଁ ।
ସତତ ଥିଲୁ ଆଶା ପ୍ରୀତି ସମାନ
ପ୍ରାନ୍ତ-ତର-ଉପ୍ତ ଅଦୃଶ୍ୟମାନ ।
ଏବେ ମଧ୍ୟ ଶୋଇଣ ଶସ୍ୟକେଦାରେ
ତୋର ସୁଧା-ସଙ୍ଗୀତ ମୁଁ ଶୁଣି ପାରେ ।
ଶୁଣି ଶୁଣି ତୋ ସ୍ୱନ ହୁଏ ସ୍ମରଣ
ମୋର ସୁବର୍ଣ୍ଣ-ଯୁଗ-ବାଲ୍ୟ-ଜୀବନ ।
ଧନ୍ୟ ଧନ୍ୟ ରେ ପକ୍ଷି ! ଏହି ଧରଣୀ—
ଶୁଣି ତୋ ସୁଧାଗୀତ—ପୁଣି ମୁଁ ମଣି
ଚୂପଟରେଖାବନ୍ଧନ ଅପ୍ସରଦେଶ
ତୋହରି ଉପଯୁକ୍ତ ବାସ-ପ୍ରଦେଶ ।

*Wordsworth.*

# କୋକିଳ ।

—ଃ୦ଃ୦—

୧

ସ୍ୱାଗତ ସୁନ୍ଦର ନିକୁଞ୍ଜ-ରସିକ,
ସ୍ୱାଗତ ବସନ୍ତଚର !
ସାଜଛନ୍ତି ବନ୍ଧୁ ତୋର ସର୍ବ୍ବ-ଯାମ,
ଡାକଇ ବନ ସାଦର ।

୨

ହେଲେ ଶ୍ୟାମ ବେଶ ପୁଷ୍ପବମଣ୍ଡିତ
ଗାଉ ସୁନନ୍ଦିତ ସ୍ୱନେ,
ଅଛି କ ତାରକା ବୃନ୍ଦପରମ୍ପର
ଅବା ପଥ ପ୍ରଦର୍ଶନେ ?

୩

ପ୍ରଫୁଲ୍ଲ ପଥିକ ତୋହର ସଙ୍ଗତେ
ସମ୍ଭାଷେ କୁସୁମକାଳେ,
ଶୁଣଇ ନିକୁଞ୍ଜ- ନିବାସୀ ବଧୂଙ୍କ
ମଧୁର ସଙ୍ଗୀତ ତାଳେ ।

୪

ଗୋଲାପ କୁସୁମ— ଚନ୍ଦନ ଅଶନସ୍ତୁ
ଭ୍ରମୁ ଭ୍ରମୁ ଶିଶୁ ବନେ

ଚମକ ପଡଇ ଶୁଣି ତୋର ସ୍ୱନ,
ଅନୁକରେ ତୋ ସ୍ୱାସ୍ୱନେ ।

୫

ମଟର-ଅଙ୍କୁର ଫଳଶେ ଆସିଲେ—
ସନ୍ଧେ ଗୁମ୍ଫି ବଉଳ,
ବର୍ଷ ପରେ ପୁଣି ଆଜ କେଉଁ ଦେଶେ
ଅନ ଋତୁସଙ୍ଗେ ଭଜୁ ।

୬

ପ୍ରିୟ ପକ୍ଷୀ ! ସଦା ଶ୍ୟାମ ତୋ ନିକୁଞ୍ଜ,
ତୋ ନଭ ନିର୍ମଳ ଚିର;
ସଙ୍ଗୀତେ ତୋହର ନାହିଁ ତ ବିଷାଦ,
ତୋ ବର୍ଷେ ନାହିଁ ଶିଶିର ।

୭

ଅହା ! ଶକ୍ତି ଥିଲେ ଉଡ଼ି ମୁଁ ଯାଆନ୍ତି
ବସନ୍ତ-ବନ୍ଧୁ ତୋ ସଙ୍ଗେ,
ଧରଣୀ ଉପରେ ବାର୍ଷିକ ଭ୍ରମଣ
କରନ୍ତୁ ବେନଏ ରଙ୍ଗେ !

*Logan.

## ପ୍ରବାସୀ ।

—:C:—

"O tell her, brief is life but love is long,
O swallow, flying from the golden woods,
Fly to her, and pipe and woo her, and make her mine.

*The Princess—Tennyson.*

—:0:0—

ଧୀରେ ମାତୁଅଛ ଧନ୍ୟ ଋତୁରାଜ ମଧୁ,
ମଧୁତାନେ ଡାକ ଦିଏ ମଧୁବନ-ବଧୂ
ଦକ୍ଷିଣରୁ ମୃଦୁ ମନ୍ଦ ବହୁଛ ମଳୟ,
ଲତା-ଦ୍ରୁମେ ବିକଶିଛ ନବ କିଶଳୟ ।
ମଞ୍ଜୁଗୁଞ୍ଜେ ମଧୁକର ଗୁଣୁ ଗୁଣୁ ଗୁଞ୍ଜେ,
ପ୍ରଫୁଲ୍ଲ ପ୍ରସୂନ ଧରା-ପଥ-ତୋଟା-କୁଞ୍ଜେ ।
ଏକାଳେ ବିଦେଶୀ ଏକ ସୁଦୂର ପ୍ରବାସେ
ଏକ କଣ୍ଠେ ପଠାଉଛି ବାର୍ତ୍ତା ପ୍ରିୟା ପାଶେ ।
କହିବୁ କୋକିଳ, ଯେବେ ନ ପାରୁ ମେଳିଣି
ବିରହ-ବଧୂର ପ୍ରାଣ ହୁଏ ମୋର ହାଣି ।
ଇଚ୍ଛା ନ ଥିଲେହେଁ ଦୁଃଖେ ଅଣିଛି ବିଦାୟ,
ପ୍ରାଣ ତାହା ପାଶେ, ଏଥି ଅଛି ମାତ୍ର କାୟ ।"

ଅର୍ଦ୍ଧପ୍ରାଣେ ପଡ଼ିଅଛି ବିଷାଦ-ପ୍ରବାହେ
ବିଚ୍ଛେଦ-ବହ୍ନିବଦଗ୍ଧ ହୋଇବା ସକାଶେ ।
ସୌଦାମିନୀ ଜଣି ତାର ଝଟି ଝଟି ତନୁ
ପାସୋର ନ ଯିବ ପ୍ରାଣ ଥିବାଯାଏ ମନୁ ।
ଚଳ ଚଳ ତା ମୂରତି ହସ ହସ ମୁଖ
ଦେଖି ହାତେ ପାଏଁ ପିକ, ଦେବଭୋଗ୍ୟ ସୁଖ ।
କଠୋର କର୍ତ୍ତବ୍ୟ-କ୍ଷେତ୍ରେ କର୍ମ କଲାବେଳେ
ତା ରୂପ-ମାଧୁରୀ ମୋର ମନେ ପଡ଼େ ହେଳେ ।
ରୋଗେ ସ୍ୱାସ୍ଥ୍ୟେ ଦୁଃଖେ ସୁଖେ ଥାଏଁ ଯଥା ତଥା,
ଭୁଲେ ମନେ ପଡୁଥାଏ କୋକିଳ, ତା କଥା ।
ରୋଗ-ଶଯ୍ୟା ପାଶେ ତାର ବିଷଣ୍ଣ ବଦନ,
ତପ୍ତ ବାରି-ବିନ୍ଦୁ ସେବା ସ୍ନେହ-ଉଚ୍ଛ୍ୱସିତ,
କ ଦେଇ ପ୍ରେୟସୀ-ଋଣ-ପାଶୁଁ ମୁକ୍ତ ହେବ,
କେମନ୍ତେ ସେ ପ୍ରୀତିର ମୁଁ ପରିଶୋଧ ଦେବ ?
ପ୍ରଥମ ବାସର ସେହି ନବୀନ ପ୍ରଣୟ
ନ ଭୁଲିବ ପ୍ରାଣ ଥିବାଯାଏ ଏ ହୃଦୟ ।
ନିଷ୍ପତ୍ର ତାର ସେହି ଅସ୍ଫୁଟପଙ୍କଜ୍ହେ
ଅତୁଳ ସମ୍ପଦରୂପେ ସମ୍ପାଦଇ ମନେ ।
ଅଚ୍ଛାଦଲେ ହୃଦାକାଶ ବିଷାଦ-ଅନ୍ଧାର,
ତା ପୀରତ-ମୃତ ମୁଖ-ମୟୂଖର ଧାର।

ନିରାଶା-ଦୁର୍ଦ୍ଦିନ ହୃଦାକାଶେ ଦେଲେ ଦେଖା,
ତା ମଧ୍ୟରୁ ପ୍ରୀତି ଆଶା-ଚପଳାର ରେଖା ।
କିନ୍ତୁ ପିକ, ବନ୍ଧୁ ଯେବେ କରିଦେବ ପର,
ବିଫଳ ଲଭିବା ମୋର, ନର-କଳେବର ।
ଭାବସ୍ଥାନ ନେଇ ତାର ଦେଖିଲେ କୋକିଳ,
ହୃଦ-ବୃନ୍ତୁଁ ପ୍ରୀତି-ପୁଷ୍ପ ପଡ଼େ ଖସି ତଳ ।
ନଶ୍ୱର ଯୌବନ ପୁଣି ନଶ୍ୱର ଜୀବନ,
ନିଷ୍କପଟ ପ୍ରୀତି କିନ୍ତୁ ଅଟେ ଚିରନ୍ତନ !
କଠୋର ଜୀବନ-ବ୍ରତ କଠୋର ସଂସାର,
ଘୋର ବାତ୍ୟା-ବିତାଡ଼ିତ ଭବ-ପାରାବାର ।
ମୃଗତୃଷ୍ଣା-ପ୍ରବଞ୍ଚିତ ଧରା-ମରୁଦେଶ,
ବିପଦସଙ୍କୁଳ ଏ ଯେ ସଂସାର-ବିଦେଶ ।
ସୁଖେ ଦୁଃଖେ ପାଶେ ଦୂରେ କହିବୁ ରେ ଏଷେ,
ସେ ମୋହର ମୁଁ ତାହାର ମନେ ଥିବ ରଖି ।



# ବିରହିଣୀ ଲତା ।

O that 'twere possible
After long grief and pain
To find the arms of my true love
Round me once again!

*Maud: Tennyson.*

---

ଦୁଇ ଭ୍ରମର ମିଳି     ପ୍ରବାସ କରି ଗଲେ
ଭ୍ରମିଲେ ସୁଦୂର ବିଦେଶେ,
ଏମନ୍ତେ ବହୁ କାଳ     ବାହୁଣି ଗଲା ଗୃହ
ବାହୁଡ଼ି ନଇଲେ ସ୍ୱଦେଶେ ।
ଏକର ବାଲ୍ୟ ସଖୀ     କ୍ଷୀର-ନୀର-ବାନ୍ଧବୀ
ଲତାଏ ଥିଲା; ଧନ ଯାର
କୋମଳ ଅଙ୍ଗରେ ସେ     କଢ଼ିଟି ଦୋଳଥିଲା
ଫୁଟି ସେ ଦିଶେ ଦାଉ ଦାଉ ।
ପ୍ରଭାତ-ସମୀରଣେ     ଦୋହଲୁଥାଏ ଲତା,
ଶାଖାରେ ବସି ପକ୍ଷୀ ଗାଏ,
କଣ୍ଠେପାତ ନୀହାର-     ଛଳେ ନେସ ଫୁଲଲତା-
ନୟନୁଁ ଧାର ଝରୁଥାଏ ।
ବେଳ ଯାଅନ୍ତେ ବୁଡ଼ି     ମାଡ଼ି ଅସେ ଅନ୍ଧାର,
ଫେରନ୍ତି ଗୋଗୋଷ୍ଠେ ଗୋଧନ,

ପଥେ ପଥିକମାନେ ପୁଷ୍ପିତା ଲତା-ଅଙ୍ଗେ
ଫେରନ୍ତି ସତୃଷ୍ଣ ନୟନ ।
କୃଷକ ନିଜ କ୍ଷେତ୍ରୁ ଧାଇଁଥା ଗ୍ରାମ-ଦ୍ୱାରୁ
ପଠାରୁ ଗୋପାଳ ଫେରଇ,
ନଦୀ-ଅନ୍ତରାଳରୁ ଚକ୍ରବାକ ମିଥୁନ
ଡାକ ଦିଅନ୍ତି ରହି ରହି ।
ମେଲ୍ଲିଣି-ଗୀତ ଗାଇ ବସା-ଗଛ ଆଡ଼କୁ
ଆକାଶେ ଉଡ଼ିଯାଏ ପକ୍ଷୀ ।
କଣ୍ଠେ ବାହୁ-ବନ୍ଧନେ ଲତା-ବିତାନ-ତଳେ
ବୁଲନ୍ତି ଆସି ସଖା ସଖୀ ।
ଅଲୋକ-ଅନ୍ଧକାର- ଜମ୍ୟମଧୁମିଳନ
ଦେଖନ୍ତି ଏକାକିନୀ ଲତା
ମଧୁପୂର୍ଣ୍ଣ କୁସୁମ, ପୀଡ଼େ ଲତାର ଅଙ୍ଗ,
ବଢ଼େ ହୃଦେ ହୃଏ ସେ ଆକୁଳା ।
ଏମନ୍ତେ ବହୁକାଳେ ନେଇ ଧୈର୍ଯ୍ୟପଦ
ବାହୁଡ଼ି ଅଇଲା ସ୍ୱଦେଶେ,
ହୃଦୟ-ଅଦର୍ଶନେ ଝାଳିପଡ଼ିଲା ଲତା
ଦାରୁଣ ବିଷାଦ ଆବେଶେ ।



# ଜେମାଦେଈ ।

"ଉଡ଼ଗଲେ ଚେଗ୍ରାଳିଆ ଝାଡ଼ିଦେଲେ ପକ୍ଷ,
ଜେମାଦେଈ କାନ୍ଦୁଛନ୍ତି ଘୁଞ୍ଚା ବର ଦେଖି ।
ବାପା ବୋଇଲେ ଝିଅ ମୋର ବାର ବରଷର,
ମା ବୋଇଲେ ଝିଅ ମୋର କୋଠାକୁ ସୁନ୍ଦର ।
ଭାଇ ବୋଇଲେ ଭଉଣୀ ମୋର କଡ ପାଶେ ଥାଉ,
ହଂସିକା ଖାଇଲେ କହେ ଦୂର ଦେଶେ ଯାଉ ।"

୨

ଉଡ଼ିଗଲେ ଚେଗ୍ରାଳିଆ ଝାଡ଼ିଦେଲେ ପର,
ଜେମାଦେଈଙ୍କର ବର ଅଶୀ ବରଷର ।
ଝାଡ଼ିଦେଲେ ପର ଉଡ଼ିଗଲେ ଚେଗ୍ରାଳିଆ,
ଜେମାଦେଈଙ୍କର ବର କୋଇଲିକାଳିଆ ।
ଜଗନ୍ନାଥଙ୍କର ସୁନା ଅଟଇ ବଢ଼ାଇ,
କାହାକୁ ଦିଅନ୍ତି ପାଟ କାହାକୁ ଗଢ଼ାଇ ।

୩

ରୂପର ଚୁଳିଆ ସୁନା ନୂଏ ନିବାଳାଟଳ,
ଯୁବାକାଳ ଗଲେ ରୂପ ନ ଫେରଇ ଟାଳେ !
ଗ୍ରୀଷ୍ମ-ଶେଷ-ମୁଣ୍ଡ-ଧର ଅଟଇ ନେତ୍ରକୁ,
ବୁଢ଼ାକାଳ-ଦଣ୍ଡ ପସ ଥଇଲୁ ପରକୁ ।

ନବୀନ ବସ୍ତ୍ର ପିନା ପୀରତି-ସମସ୍ତ,
ଘର ନ ଧରିଣ ମନ ହୁଏନ୍ତି ଅଥୟ ।

୪

ସହକାର-ଡାଳେ ମାତେ ମାଧବୀ ଲତିକା,
ବାନ୍ଧୁ ଛନ୍ଦ ନସ୍ତଥାନ୍ତି ରସିକ ରସିକା ।
ରଜା-ପୁଅ ଯୋଗୀ ହେଲେ ନ ହୁଅଇ ଜଣା,
ନ ଶୁଟଲ ପାଶରେ କାନ୍ତ ଲଗୁଥାଏ ବଣା ।
ଉଡ଼ିଗଲେ ଚେନ୍ଦ୍ରାଳିଆ ଝଛ ଆକାଶରେ,
କେମାଦେଈ କାନ୍ଦୁଛନ୍ତି ମନ୍ଥଶଯ୍ୟା-ଘରେ ।

୫

ଉଡ଼ିଗଲେ ଚେନ୍ଦ୍ରାଳିଆ ଝାଡ଼ି ଦେଇଲ ପର,
କେମାଦେଈ ହସିବଟେଲ ଅଜ ବୁଢ଼ାବର !
ବଳର ଗୋଲ୍ଲପେ ଆଡି ବଧେଥିଲ କୁଆ,
ଉଡ଼ି ଛୁଟିଗଲା କାହିଁପାଇଁ ନୂଆ ନୂଆ !
ପୋଡ଼ିଗଲା ତଅଣରେ ସ୍ୱାଦ ନ ଥାଏ,
ନ ଫୁଟୁଣୁ ପଦ୍ମକଳି ମଉଳିଣ ଯାଏ ।

୬

ଉଡ଼ିଗଲେ ଚେନ୍ଦ୍ରାଳିଆ ଝାଡ଼ିଦେଲେ ପର,
କେମାଦେଈ କାନ୍ଦୁଛନ୍ତି ଝୁର ବୁଢ଼ା ବର ।

ଗୀତ ଗାଇ ଯାଅ କଏ ବଦେଶୀ ପଥିକ,
ମୋତେ ଦେଖି ଗାଉଛ କ ଅଚହ୍ନା ରସିକ ?
ପାଣି ଅଣିବାକୁ ଯାଏ ପଡା-ପୋଖରୀକ,
ହସନ୍ତି ଯୁବକମାନେ ମୁରୁକି ମୁରୁକି ।

୮

ପୋଖରୀକୂଳରେ ସେହି ବଉଳମୂଳରେ
ସବଇ କୋଇଲି "କୁଉ" "କୁଉ" ଥରେ ଥରେ,
ଦକ୍ଷିଣା ପବନ ବହିଯାଏ ଫୁଲୁ ଫୁଲୁ,
ଛୁଇଁ ମୋର କାହିଁପାଇଁ ପଡେ ଦୁଲୁ ଦୁଲୁ !
ପ୍ରେମମୂଳ ଅଙ୍କୁରଣ ଉଠଇ ମୋ ହୃଦ,
ପୋଡ଼ୁରେ ନଳିନ ପ୍ରାଣ ଯୁହାଗ ତୋହର ।

୯

ଭସିଗଲା ନଦୀଜଳେ ବଉଳର ମାଳା,
କି କରିବ କାହିଁ ଯିବ ମୁଁ ଷୋଡ଼ଶୀ ବାଳା ?
କଏ ସଖି ରୁଷକେଶି, ପୁଷ୍କରଣୀ ତୀରର
ନଇମାଝି ନାଆ ସଙ୍ଗେ ଗଲୁ ଧୀରେ ଧୀରେ ?
ଅଞ୍ଚଳ କରୁ କି ମୋତେ ସୁହାଗିନୀ ଘୋଷା,
ଫିଟିଛ କପାଇଁ ତୋହ୍ୱୋ କୁସୁମର ଗୋଶା ?

ଅନ୍ଧା ଅନ୍ଧା ନୁହେ କେହ୍ନ, ମୋହର ଏ ଘର,
ଛି ଛି ରେ ପୋଡ଼ା ଯଉବଣ ମହୁତ ତୋ ନାହିଁ !
ମୋର୍ ବାପ ଭାଇ ମା ଅ ଜନ-କଂସେଇ,
ଅକାତ ପାଣିରେ ମୋତେ ଦେଲେ ଗୋ ଭସାଇ !
ନଷ୍ଟୁର ସମାଜ ତୋର କ ଦୋଷ ମୁଁ କଲି,
ଏ ବୟସେ ଏ ବେଶକୁ କର୍ପା ମୁଁ ବନ୍ଧିଲି ?

## ବ୍ୟର୍ଥପ୍ରଣୟ ।

"Ah! why was love to mortals given,
"To lift them to the heights of heaven,
"Or dash them to the depths of hell?
"Yet I do not reproach thee dear!"
*P. B. Shelley.*

କାହିଁ ଅଛ ଦିଅ ଦେଖାଁ ମୋ ପ୍ରାଣ-ରମଣ ?
ବହୁତ-ଗରବେ ସବୁ ଦିଅ ବିସର୍ଜନ ।
ଦେଖି ତବ ମଧୁମୁଖ ହୁଏ ମୋ ଦାରୁଣ ଦୁଃଖ,
ପୋଡ଼ଯାଏ ପ୍ରାଣ ଦେଖି ସେ ରମ୍ୟ ନୟନ ।
ଦେଖି ମୂରତ ମୋହନ ହୁଅଇ ମନ ଉଛନ୍ନ,
ତରଳି ଯାଏ ପ୍ରବର ! ନବୀନ ଯୌବନ ।
ଭାବେଁ ତେଜ ଏ ସଂସାର ନଦାରୁଣ କାରାଗାର
ଜୀବନ ଯୌବନ ମାନ କରେଁ ସମର୍ପଣ ।

ପଲକେ ଝଲକ୍କ ଭସ୍ମ     ଦୋଷେ ମୋ ପର୍ଣ୍ଣମସ୍ତୁ
ଗୃହକୋଣେ ଯାଏଁ ଗୃହ ରହେଁ ମାତ୍ର ମନ ।
ନିତ୍ୟକର୍ମେ ଦେଇ ମନ ସେଥେ ଢାଳଉଁ ଯୌବନ,
ପୁଣି କାହିଁ ହାଅ ଦେଖୁ ହେ ମନମୋହନ ?
ଦାରୁଣ ସଂସାର-ନୀତି,     ଦାରୁଣ ପୀରତି-ସ୍ମୃତି,
ଏ ଜୀବନେ ତୁମ୍ଭ ମୋର ନୋହିବ ମିଳନ !

---

## ପଲ୍ଲୀପଥ ।



ଶୀତ ଶେଷେ ଗ୍ରାମବଧୂଗଣ
କର ପ୍ରାତଃସ୍ନାନ ସମାପନ
ଥରଥର ଦଶନରେ     ଢୁଳ ଢୁଳ ନୟନରେ
ଦୁଃଖ-ସୁଖ କଥା କହୁଥିଲେ ବାଳାଗଣ,
ବହୁଥିଲା ମୋ କର୍ଣ୍ଣେ ସେ ସ୍ୱନ ସମୀରଣ ।
ଏ ସମୟେ ତେଜି ନିଦ୍ରାଲସ୍ୟ
ଶୂନ୍ୟପ୍ରାଣେ ଛାଡ଼ିଲି ନିଳୟ
ବାହାର ଅବା ଭ୍ରମଣେ     ଶାନ୍ତି ବିରଜିବ ମନେ;
ଦେଖିଲି ଗଗନପଥେ ପୂର୍ବବଧୂ ଉଷା
ଚିହ୍ନ ହୋଇଅଛି ଉଭା ଗୃହୁ ଶଙ୍ଖଧୂଷା ।

ଉଷାଳମ ଗ୍ରାମପଥେ କିଏ ?
ଏକୁଟିଆ ନବବଧୂଟିଏ
ଥୁରୁଥୁରୁ ହୁଏଁ ଜାଡ଼େ    ପଥୁଁ ଘୃଷ୍ଟ ହୁଏ ଅତେ !
ଗୁଁ ଅଢ଼ ହୁଅନ୍ତେ ପାଦ୍ରେ ବାଜ ଲାଜକୁଳୀ
ବ୍ରୀଡ଼ାବତୀ ସେ ବ୍ରତତୀ ପଡ଼ିଲା ଝାଉଁଳି !

ଅଳପ ଅଳପ ପଢ଼ ଖସ
ଅପରୂପ ଶୋଭାବତୀ ଧରା,
ବସେଣ ବାଢ଼ ଭିତରେ    ନାଗିଏ ହୃଷ୍ଟଚିତ୍ତରେ
ସେବୁଥିଲେ ପ୍ରାଚୀପୃଷ୍ଠା ହୋଇ ରବିକର,
ଅଳପ-ଉତ୍ତାପ ଯୋଗୁଁ ତନୁ ଥରଥର ।

ଆହା କିଏ ଏସନେକ କାଳେ
ଘନସାନ୍ଦ୍ର ତମାଳର ଡ଼ାଳେ
ଚିର ପରିଚିତ ସ୍ୱନେ    ସୁଦୁର୍ଲ୍ଲଭ ଯୁଗ୍ମବର୍ଣ୍ଣେ
ସୁଧାସ୍ୱନେ ଡ଼ାକେ ଆଜି ନବୀନ ଅତିଥି ?
କାଳ-ବାରିଧିରେ ବର୍ଷେ ଯାଇଅଛି ଭିତ !
କାହିଁ ଥିଲୁ ବର୍ଷେ ପରଭୃତ,
କହାଁ ଶିରୁ ରେ ବସନ୍ତଦୂତ !
କେତେ ସୁଖ ଦୁଃଖ ବିତି    ଯାଇଅଛି ନିତ ନିତ,
ସ୍ମୃତି ତାର ଦିଗନ୍ତରେ ଲୁଚି ରହିଥିଲା,
ତୋ ସ୍ୱନ ଶୁଣନ୍ତେ ଆହା ବିଭ୍ରସି ଉଠିଲା !

ହେମ-ଅଙ୍ଗୀ ନୀଳକେଶୀଗଣ
ଚମକଣ ଡେରିଲେ ଶ୍ରବଣ,
ଶୁଣି ଅପରୂପ ଗାନ       ଅବେଶେ ଉଦ୍‌ବେଳ-ପ୍ରାଣ
ଚଞ୍ଚଳିତ ହେମ-ଅଙ୍ଗେ ଉଚ୍ଛୁଳି ପଡ଼ିଲା,
ସୃଷ୍ଟି-ପଟେ ଶୁଭ୍ର ଚିତ୍ର କିଏ ସେ ଆଙ୍କିଲା ?

—:୦:—

# ଗ୍ରୀଷ୍ମ ।

୧

କାଳେ ଋତୁରାଜ ବସନ୍ତ ତେଜି ଯାଆନ୍ତେ ଧରା,
ଦୁର୍ଦ୍ଦାନ୍ତଗତରେ ଅଇଲା ମାର୍ତ୍ତ ଦାରୁଣ ଖରା ।
କ୍ରମେ ପିକ-କୁହୁ-ଶବଦ ଅନ୍ତର୍ହିତ ହୋଇଲା,
ଦିଗ-ଅନ୍ତବ୍ୟାପୀ ହାହାକାର ରବ ଉଠି ଗଲା ।
ବହିଲା ରୁଧିର-ଶୋଷଣ-କାରୀ ତପ୍ତ ପବନ,
ଝରିଲପଲ୍ଲବ ହୋଇଲେ ଲତା-ବିଟପୀଗଣ ।
ମଧ୍ୟାହ୍ନେ ସୁଦୂର ସୈକତେ ସୁବିସ୍ତୀର୍ଣ୍ଣ ପ୍ରାନ୍ତରେ
ଗମ୍ଭୀର ବଳରେ ପାଟରେ ନଦୀଶଯ୍ୟା ଉପରେ
ଫଟେ ତପ୍ତ ବାସ୍ପ ନାଚଇ ମରୀଚିକାର ଜଳ,
ଦେଖି ଧାଏଁ ଯେବେ ତୃଷାର୍ତ୍ତ ହୁଏ ଆଁଖି ବିଫଳ !

ଡାକ କହେ ଶୂନ୍ୟେ ବୈରାଗୀ
"ଅରେ ରେ ମୁଗ୍ଧ ମନ !
ଭବେ-ମୋହ-ମୃଗତୃଷ୍ଣିକା ଆଶା-ତପ୍ତ-ପବନ
ଜୀବନ-ନିଦାଘ-ମଧ୍ୟାହ୍ନେ ଏସନେହିଁ ଦିଶନ୍ତି,
ହେଲେ ମୋହ-ମୁଗ୍ଧ ମାନବେ ପ୍ରବଞ୍ଚନା କରନ୍ତି ।

୨

"ଲୁଚକାଳି"-ଖେଳ ଖେଳନ୍ତି ଶିଶୁଗଣ ପ୍ରଦୋଷେ,
ଲୁଚକାଳି କିବା ଖେଳନ୍ତି ମେଘମାନେ ଆକାଶେ ?
ଠାବେ ଠାବେ ବସି ବାହୁସୀ ଗାଉଛନ୍ତି ଭଜନ,
କେଉଁଠାରେ କଏ ଜାଳୁଛି "ବହ୍ନିଶର ହାସନ" ।
କଏ କେଉଁଠାରେ ଗାଉଛି "କାନ୍ତକୋଇଲ ଗୀତ,"
"ଗାରଫିନ୍ଦ ରଉତରଶ୍ମି" କାହିଁ ମୋହୁଛି ଚିତ୍ତ ।
କୋଡ଼ କୋଡ଼ ଦେଶେ ଆକାଶେ ଧଳା ବଉଦପନ୍ତି,
ବୈଦିକ ଋଷିଏ ମଞ୍ଚ କି ସ୍ୱର୍ଗେ ସୃଷ୍ଟ କରନ୍ତି ?
"ବଡ଼ଦାଣ୍ଡ" ପରି ଦିଶଇ "ଝସଦାଣ୍ଡି" ଗଗନେ,
ଅମୃତ-ଭାର କି ବହନ୍ତି ତହିଁ ଦେବତାଗଣେ ?
ଧଳା କଳା ନୀଳ ବଉଦେ ଠିଆ ଯାପନ୍ତି "ସ୍ୱର୍ଗ",
ଜୀବନେ ଯେସନ ଆମ୍ଭଙ୍କୁ ଠିଏ ଘଟନାବର୍ଗ ।
ଷଠିଣ ଦେଶେ ଜନ୍ତୁ ଷଣେକେ ହୁଏ ମେଘେ ଅଛନ୍ତି,"
ଏହ୍ନପରି ସିନା ବିଷାଦ-ହର୍ଷେ ପୂର୍ଣ୍ଣ ଜୀବନ !

୩

ନିଶିରେ ଅକାଶ ଦିଶଇ କେଡ଼େ ସୁନୀଳବର୍ଣ୍ଣ,
ତହିଁ ମିଟିମିଟି ଅନାନ୍ତି ତୋର ତାରକାଗଣ ।
ଜଗତଜୀବନସୁକୃତଚକ୍ଷୁ ପ୍ରାୟ ଏମାନେ,
ହେଲେ ଜନରବ ଏ ବାର୍ତ୍ତା କହିଦଏ ମୋ କାନେ !
ପ୍ରିୟାବକ୍ଷେ ଲେପି କର୍ପୂର ବେଣାଚେର ଚନ୍ଦନ
ଗଲେ ମଲ୍ଲୀହାର ଲମ୍ବାନ୍ତି ପଲ୍ଲୀ-ରସିକଗଣ ।
ପରସ୍ପର-ମୁହୁଁ ଚହଣା ଛଡ଼ାଛଡ଼ି ହୁଅନ୍ତି,
କେତା ରଶ୍ମି କବା ଉଡ଼ାଏ ପ୍ରେମ-ବଇଜୟନ୍ତୀ ?
ଆଲାପେ ରଜନୀ କଟନ୍ତି କାନ୍ତକାନ୍ତା ଉଲ୍ଲସେ,
ଯାମିନୀ-ପାହାନ୍ତା-ପ୍ରହରେ ମାତ୍ର ଅଧର ନିଦ ।

କାନ୍ତକୋଳେ ସୁପ୍ତା ନବୀନା, ବହେ ଖର ନିଶ୍ୱାସ,
ଦୁଥୂନ କନକ-ଉରସ୍ଥ ଖସି ଯାଇଛି ବାସ,
ଧଳ କୃଷ୍ଣକେଶ କମ୍ପାଏ ମୃଦୁ ମନ୍ଦ ପବନ,
ସୁଖ-ସ୍ୱପ୍ନେ ବାଳା ଗୋଲାପୀ ଓଷ୍ଠ ହୁଏ କମ୍ପନ;
ଅନନ୍ତ-ଅଙ୍କରେ ସୁପ୍ତା ବାତ-ବକ୍ଷୁଦ୍ଧ ଧରା,
ଉଚ୍ଚ ଅଭ୍ରଭେଦୀ ତୁଙ୍ଗାଦ୍ରି, ନାହିଁ ବ୍ୟାଧର ଶର,
ନଭେଁ ଆନ୍ଦୋଳିତ ହୁଅନ୍ତି କୃଷ୍ଣବାରିଦଗଣେ,
ଧୀରେ ମନ୍ଥରେ ଚଳନ୍ତି ନିଶାନ୍ତର ପବନେ ।

# ଏକାଟିଆଚଷାଗୀତ ।



୧

ଦେଖୁଁ ଦେଖୁଁ ମାତ୍ର ଅଟେ ଘନ ବରଷା,
ବଳକାମ ସାରି ଗୃହ ଗଲେଣି ଚଷା,
ଗଗନେ ଗରଜେ ଘନ,
ବହିଲ ଖର ପବନ,
ଘୋର ରଡ ଘଡ଼ଘଡ଼ ଉଡ଼େ ଭରସା,
ଦେଖୁଁ ଦେଖୁଁ ମାତ୍ର ଅଟେ ଘନ ବରଷା ।

୨

ନିଚ୍ଛଟିଆ ପାଞ୍ଚ ବୁଲ ମାତ୍ରଇ ଡର,
ଠକ ଠକ ପଡ଼େ ମୁଣ୍ଡେ ସ୍ୱର୍ଗପଥର,
ଚଉଦଗ ଚକ ଡକ
ଦଶେ ବଜ୍ରଳ ଚମକ,
ଗିରିବନେ ଗରଜନ୍ତି ଲତାପତର,
ଗଛ ଗଛ ଯାଉଛିଲ, ମାତଇ ଡର ।

୩

ଏକାଟିଆ ଚଷା ମୁହିଁ ସାହା ମୋ ନାହିଁ,
ଯାଥୀ ଚିଷାମାନେ ମୋତେ କରନ୍ତି ଛାହି,

ନବୀନ-ବରଷାକାଳେ
ଡାକଇ ଆସ୍ଥକେ ଡାଳେ,
ନ ଛୁଡ଼ଲେ ପ୍ରେୟସୀକୁ ତା ବାପ ଭାଇ,
ଏକାଣ୍ଟିଆ ଚଷା ମୁହିଁ ସାହା ମୋ ନାହିଁ ।

୪

ନୀଳ ଅକାଶରେ ଧଶେ କଳା ବଉଦ,
ଗମ୍ଭୀର ବିଲ-ମଝିରେ ବେଣାର କୁଦ,
ଅକାଶ ଢାଙ୍କଇ ଘନ,
ବହଇ ଖର ପବନ,
ଇନ୍ଦ୍ରନୀଳମଣିବାଣ୍ଡି ଦେବା-ସଉଧ
ନୀଳ-ଅକାଶରେ ଧାଶେ କଳା ବଉଦ ।

୫

ପର୍ବତଶିଖରେ ମେଘ ଚରଇ ଲଣ୍ଠା,
ନଈକୂଳେ ହୁଏ ଯାନକଅଥର କଣ୍ଟା,
ଧୂଇ କୂଳ ଖାଇ ନଈ
ଧାଏ କେଉଁ ଦେଶେ ବହି,
ଘୋର ବରଷାର ଅଜ କି ଘନଘଟା !
ପର୍ବତଶିଖରେ ମେଘ ଚରୁଛି ଲଣ୍ଠା ।

୬

ଯା'ଏ ସିନ୍ଧୁ ପକ୍ଷେ ମତ୍ତ ଯୌବନଭର
ଦୁଇ କୂଳ ଖାଇ ନଈ, ଝରେ ଅନ୍ତର,
ଏ ବୟସେ ସ୍ନେହ ମୁକ୍ତି
ନାହିଁ ଯାହା ମୋର କତ !
ଉଦ୍ଦାମ ଯୌବନେ ଧନୀ ସେ ଦେଖି ପର
ଆସେ ମୋର ପାଶେ ମତ୍ତ ଯୌବନଭର !

୭

ଆକାଶେ ଦଶଇ ମେଘ କଳାହାଣ୍ଡିଆ,
ସେପାରରେ ଡାକେ କିଏ ହୋଇଣ ଠିଆ ?
ଦୂର ଦେଶର ବାଟୋଇ,
ନାହିଁ ମୋର ସାଥୀ କେହି,
ନାବ ବନ୍ଧ ଆଣି ବେଗେ ଏ ନାଉରିଆ,
ଆକାଶେ ଦିଶଇ ମେଘ କଳାହାଣ୍ଡିଆ ।

୮

କେତେ ଗୀତ ଗାଉ ଆରେ ନାଉରୀ ଭାଇ !
ତୁରିତେ ଏ ପାରେ ନାବ ଆଣ ତୁ ବାଇ ।
ଝଞ୍ଝ ଝଡ଼ ଝଡ଼ର ନାଦ,
କଳ କଳ ନଦୀନୀର,
ମାଡ଼ ଆସୁଛି ଅନ୍ଧାର ବେଳ ତ ନାହିଁ,
ବାଇ ଆଣ ବେଗେ ନାବ ନାଉରୀ ଭାଇ ।

# ଅର୍ଜୁନୋର୍ବଶୀ ।

ସୁନାସୀର-ଚର-ଚନ୍ଦ୍ରସେନ ଗିର କହିଲା "ଉର୍ବଶି !
ଆଦେଶେ କୁଳିଶୀ ଶୁଣ ଗୋ ସୁକେଶି—ପୁରୁବଂଶଶଶୀ
କିରୀଟୀ ନିର୍ଜନେ ନନ୍ଦନକାନନେ ଏକାକୀ ବିଦେଶୀ,
ଯାଅ ପାର୍ଥ-ପାଶ ସୁରସରେ ରସ ଶୋଭାଙ୍ଗି ସୁକେଶି—"
ଶୁଣି ଦୂତଠାରୁ ଉର୍ବଶୀ ରମ୍ଭୋରୁ ବାଞ୍ଛିତ ବାରତା
ବିଧିଶିଳ୍ପସୀମା-ସୁତନୁମଧ୍ୟମା ତନୁବେଶରତା ।
ଚୁମ୍ବିଛି ଚରଣ ଘନ-ନୀଳବର୍ଣ୍ଣ-କୁଞ୍ଚିତ-ଚିକୁର,
କରିଛି ଅଞ୍ଚଳ ନିତମ୍ବ ଜଘନ ଉରୁ ନାଭି ଉର ।
ବିକଚନୀଳାବ୍ଜ-ପଳାଶ-ସଙ୍କାଶ ବେନି ଲୋଚନରୁ
ବରଷୁଛି ଆଭା, ଇନ୍ଦୁ ମ୍ଳାନପ୍ରଭା, ଲୋକ ଲୁଚୁ ଯରୁ ।
ଶୁଭ୍ର କମ୍ବୁକଣ୍ଠୀ ଉଦ୍‌ଗ୍ରୀବଭଙ୍ଗିଣୀ ପ୍ରଣୟୀଦର୍ଶନେ,
ଗୃହ୍ଣି ମୁକୁରେ ନିଜ ଲାବଣ୍ୟରେ ବିଜନ ଗମନେ ।
ବେନି ପୀନସ୍ତନ ମୃଦୁ ନିସ୍ପନ୍ଦନ ବିଲୋଳ ଚଳନେ,
ବିଳିତ ଚରଣ ବିପଥେ ପତନ ଚମକିତ ମନେ ।
ପୃଥୁନିତମ୍ବିନୀ ପୀନପୟସ୍ୱିନୀ ସୁଦତୀ ରମ୍ଭୋରୁ
ଚମ୍ପକବରଣୀ କମଳଲୋଚନା ସୁକେଶୀ ଲୋଳଭ୍ରୁ,
ପ୍ରିୟ-ଅଭିସାରେ-ପ୍ରଣୟ-ଆଶାରେ ହୃଦେଶ ନନ୍ଦସ୍ୱ
ଭ୍ରାନ୍ତ ସ୍ୱର୍ଗପଥେ ଚଳିଲା ଅଙ୍କିତେ ଅତିକ୍ରମ କରି ।

ନିଦ୍ଧବନ୍ଧୁବନେ ନନ୍ଦନକାନନେ ପୂର୍ଣ୍ଣେନ୍ଦୁକିରଣ,
ପାରିଜାତତରୁସୁରଭିବନରୁ ବହଇ ପବନ ।
ଚନ୍ଦ୍ରିକାଧାରରେ ପ୍ରଫୁଲ୍ଲ ମନରେ ଚକୋରୀ ଚକୋର
ପ୍ରଣୟ–ସଙ୍ଗୀତେ ନିମଗ୍ନ ହୋଇ ଚରନ୍ତି ତନ୍ମୟ ଅନ୍ତର !

ନିସ୍ତବ୍ଧ ସକଳ ମନ୍ଦାକିନୀ-ଜଳ-ବୀଚିକଳକଳ,
ତଥିପରେ ପଡ଼ି ଉଜ୍ଜ୍ୱଳ କୌମୁଦୀ ବିଲୋଳ ଚଞ୍ଚଳ ।
ପ୍ରଲମ୍ବକୁନ୍ତଳା ଅପ୍ସରଲଲାମ ବିଦ୍ୟାଧରୀ
ପଥ ଅତିକ୍ରମି ଯାଏ ଗୃହ ଦିଗ କଲ୍ଲୋଳିତ କରି ।
ଅମର-ପୁଲିନ-ଅଙ୍ଗରେ କୌମୁଦୀ ହୁଏ ଆଲୋକିତ,
ସୁଧାମଦେ ନେତ୍ର ଲୋହିତ, କଳ୍ପଦ୍ରୁଗନ୍ଧେ ଆମୋଦିତ ।

ପୁରନ୍ଦରଙ୍କର ସଭା ନନ୍ଦନର ଯେ ସ୍ଥାନେ ପଡ଼ଇ,
ସ୍ୱର୍ଗ-ଲକ୍ଷ୍ମୀ ତହିଁ ଷୋଳକଳା ଯେନ ଉଦ୍ଭବେ କ୍ରୀଡ଼ଇ ।
ମାନସ-ଜଳଧି-ବେଳା-ଭୂମି ବନ ଭାବ-ଊର୍ମିଗଣ
ନିଧିବ ନିଶୀଥ-ନିସ୍ତବ୍ଧଗଗନେ ଲୀନ ହୁଏ ଅଧେ ।
ମୃଦୁପଦଶବ୍ଦେ ଝଣଝଣତ୍କାରେ ସନ୍ତୋଷେ ସହାସେ
ଉଭି ଗୁରୁଣୀଳା କଳାବତୀ ବାଳା ପାର୍ଥବାସ-ପାଶେ ।
ନହୁଷି ଆସନେ ନିଃଶବ୍ଦେ ନର୍ତ୍ତନେ ମଧ୍ୟମପାଣ୍ଡବ
ଉପବିଷ୍ଟ; ପ୍ରାଣେ କୌରବ-କୈତବ ଘଟାଏ ତାଣ୍ଡବ ।
ତେଜି ମର୍ତ୍ତ୍ୟପୁର ପିତର ସୁଦୂର ସ୍ୱର୍ଗପୁରେ ଆସି
ହୋଇଛନ୍ତି ବୀର ତରୁଣକିଶୋର ବରଷପ୍ରବାସୀ ।

ମୃଦୁପଦେ ଚଳି ଅପ୍ସରମଣ୍ଡଳୀ ପ୍ରବେଶ୍ଲେ ଇନ୍ଦ୍ର ପାଶେ,
ଅନନ୍ତଯୌବନ-ତ୍ରିଦଶ-ବଧୂ-ମୂର୍ତ୍ତି-ତନୂ-ଦୀନ-ଅଶେ ।
ସମ୍ମୁଖେ ଅପର ତେଜ ସବ୍ୟସାଚୀ ଦେଖାଇ ସମ୍ମାନ
କହନ୍ତି ବାସବେ, "ହେ ପୁରନ୍ଦର ! ଆଜ୍ଞା କର ଦାନ ।"
ଚପଳା ଚଞ୍ଚଳା ଅଦ୍ଭୁତନୟନା ଅନନ୍ତଯୌବନା
ବସବେଶା ଶ୍ୟାମା ନମ୍ରୋରୁ ସୁତନ୍ବୀ ବିଦ୍ୟୁତବରଣା
କହେ ସୁରବାମା ତନୁମଧ୍ୟମା, "ତରୁଣ ସୁନ୍ଦର !
ଜୀବନ ଯୌବନ ଧନ ପ୍ରାଣ ମନ ଅର୍ପିଲି ମୋହର ।"
ଅଞ୍ଜଳି ଫିଟାଇ କର୍ଣ୍ଣେ ହସ୍ତ ଦେଇ କହନ୍ତି ପୌରବ:—
"କୁରୁକୁଳମାତଃ ପ୍ରଣମେ, ନ ଲଙ୍ଘ ବଂଶର ଗୌରବ ।
ପୁରୁରବାପ୍ରିୟା ପୌରବଜନନୀ ତୁମ୍ଭେ ଆଗୋ ମାତଃ !"
ସ୍ତମ୍ଭିତା, ମୂର୍ଚ୍ଛିତା, ପତିତା, ଉର୍ବଶୀ ବୋଲନ୍ତି "ଅହୋ ନାଥ !"
ଚେତନା ପାଇଣ କହେ ସୁରଯୋଷା, "ତେବେ କିସ ପାଇଁ
ଦେବ-ସଭା-ନୃତ୍ୟେ ଥିଲ ମୋହ ଅଙ୍ଗ-ପ୍ରତ୍ୟଙ୍ଗେ ଅନାଇ ?"
କହନ୍ତି ଫାଲ୍‌ଗୁନି, "ପୌରବ-ଜନନୀ ଏହୁ ସୁଲକ୍ଷଣୀ—
ଏହା ମନେ କରି ପୁତ୍ରନେତ୍ରେ ଚାହିଁ ଥିଲି ଗୋ ଜନନି !
ଦଶଦିଗପାଳ ବ୍ରହ୍ମର୍ଷିମଣ୍ଡଳ ଶୁଣନ୍ତୁ ନିବେଦନ—"
ବ୍ରହ୍ମଚର୍ଯ୍ୟବ୍ରତୀ ଅର୍ଜୁନ ଉର୍ବଶୀ ନ କରିବ ସ୍ପର୍ଶ ।"
କହେ କାମିମୁଗ୍ଧା ବାମା ସ୍ନିଗ୍ଧନେତ୍ରା, "ତୁମ୍ଭ ଯେ ଦର୍ଶନେ
ମନୋଭବ-ଇଷୁ କଲା ଜର୍ଜରିତ ମୋହର ପ୍ରାଣମନେ ।

ଏବେ ନିଦାରୁଣ କଲ ପ୍ରତ୍ୟାଖ୍ୟାନ, ଶୁଣ ମୋର ବାଣୀ,
ଦେଲି ଅଭିଶାପ ତେଣୁ ପୁରୁଷତ୍ୱ ହୋଇବ ରମଣୀ ।"
"ପୁଣ୍ୟପୁରସ୍କର୍ତ୍ତା ପାପଦଣ୍ଡଦାତା ଅଛନ୍ତି ବିଧାତା,
ଆଶୀର୍ବାଦ କର ଅଧମ ସନ୍ତାନେ ଯାଅ ଫେରି ମାତା ।"

## ସପତ୍ନୀ ।



ଇନ୍ଦ୍ରପ୍ରସ୍ଥ ଆଜି ଯାଉଛି ମୁଦ-ସମୁଦ୍ରେ ବୁଡ଼ି,
ଦୀର୍ଘ ବନବାସ କଷ୍ଟୀ ଆସିଛନ୍ତି ବାହୁଡ଼ି ।
ଧର୍ମ-ଅର୍ଥେ ସତ୍ୟ ଲଙ୍ଘିଣ ବୀର ପୃଥାନନ୍ଦନ
ରାଜ୍ୟ ସୁଖ ତେଜି ଗମିଣ ଥିଲେ ଗହନ ବନ ।
ନାନା ତୀର୍ଥ ଅଧି ଅଟବୀ ନଗ ନଗରୀ ଭ୍ରମି
କେତେ କାଳ ପୁଣି ଗମିଲେ ତୀର୍ଥ-ପ୍ରଭାସେ ରମି ।
ଶ୍ରୀକୃଷ୍ଣ-ସଙ୍ଗତେ କ୍ରୀଡ଼ିଲେ ରୈବତକ ପର୍ବତେ,
ଛଳେକେ ହରଣ ସୁଭଦ୍ରା ବସାଇଲେ ସ୍ୱରଥେ ।
ପୁଷ୍କରାଦି ତୀର୍ଥ ଭ୍ରମିଣ ଇନ୍ଦ୍ରପ୍ରସ୍ଥେ ମିଳିଲେ,
ଗୁରୁଜନ-ପଦେ ପ୍ରଣମି କୃଷ୍ଣା ପାଶେ ଗମିଲେ ।
ପତି ମୁଖ ଚାହିଁ କହନ୍ତି ଦୁଃଖେ ଦ୍ରୁପଦ-କନ୍ୟା,
"ଆଉ କାହିଁପାଇଁ ଏଠାରେ ଅଛ ଗାଣ୍ଡୀବଧନ୍ୱା ।

"ଛୁଅଁ ନା ଛୁଅଁ ନା ଅର୍ଜ୍ଜୁନ, ଅଭ ମୋ ଅପଘନ,
"ଅନ୍ୟନାରୀ ସହ ହୋଇଛି ତୁମ୍ଭ ପାଣି-ପୀଡ଼ନ,
"ଯାଅ ନବକାନ୍ତା ସୁଭଦ୍ରା-ପ୍ରେମ ସମ୍ଭୋଗ ସୁଖେ
"ସୁଖାଇବେ ସଦା ଭାସିବ ମୋତେ ଦାରୁଣ ଦୁଃଖେ ।
"ଦୁର୍ବଳ ଶୃଙ୍ଖଳ ପାଶରେ ବଦ୍ଧ ଯେଉଁ ପଦାର୍ଥ,
"ନବପାଶେ ଦୃଢ଼େ ବାନ୍ଧିଲେ ତାହା କି ହୁଏ ପାର୍ଥ ?
"ନବ ଯୁବତୀର ପ୍ରୀତିରେ ବଦ୍ଧ ତୁମ୍ଭ ହୃଦୟ,
"ନିଶ୍ଚୟ ନିଶ୍ଚୟ ! ଯାସୋର ଅଛି ପୂର୍ବ ପ୍ରଣୟ ।
"ପଙ୍କଜଫୁଲ ପାଇ ମଧୁପ ବାଉଁଫୁଲେ କି ବସେ,
"ସୁଭଦ୍ରାକୁ ଛାଡ଼ି ଅଭ କି ରହି ପାର ମୋ ପାଶେ ?
"ହେ ନବରସିକ, ପ୍ରଣୟ—କଥା ପଛେ ଭୁଲିବ,
"ପରିଣୟ-କଥା ହୃଦୟୁଁ ପୋଛି ନ ପକାଇବ ।
"ଯେଉଁ ରୂପେ ମୋତେ କିଣିଛି ! ଲକ୍ଷ୍ୟ ଭେଦ ଜିଣିଲ,
"କି ନିର୍ଦ୍ଦୟପ୍ରାଣେ ପ୍ରବେଶ ! ହେଲେ ତା ବିସୋରିଲ ?
"ହେ ପ୍ରବେଶଧାରୀ ତୁମ୍ଭର ଉତ୍ତରୀୟ-ଧାରଣେ
"ଅନୁସରିଥିବା ସଂନା ରଖି ଥିବ ସ୍ମରଣେ ।
"ପଦତଳେ ତବ ଶୋଇଲି ମୋର ପିତୃନଗରେ
"ଭସ୍ମାବଲୁଣ୍ଠିତା ହୋଇଣ ଯେହ୍ନ କୁଳାନ-ଘରେ ।
"ହେମ-ଛଦ କୋଷ ବଦନ୍ନ ଧରାତଳେ ଶୋଇଲ,
"ତୁମ୍ଭ ପାଇଁ ପିନା ଅର୍ଜ୍ଜୁନ, ପଞ୍ଚ ପତି ବରିଲ !
"ଏକରୂପେ ପଞ୍ଚଭାଇଙ୍କୁ ଏକଭାବେ ଦେଖିଲ,

"ବୀର ! ତୁମ୍ଭ ପ୍ରତି ଦୁର୍ବଳ ଚଣ୍ଡବଳେ ଧାବଇ ।
"ଅତୀବ ଦାରୁଣ ହୃଦୟ ସଖା, ଅଟଇ ତୁମ୍ଭର,
କି ଦୋଷେ ଦାସୀକି ତେଜିଲ ଅହେ ପ୍ରେମିକବର ?
"ସୌଭାଗ୍ୟବତୀ ଯେ ସୁଭଦ୍ରା ଧନ୍ୟ ଧନ୍ୟ ଅଙ୍ଗନା !
"ବଡ଼ଲ ଧନୁର୍ଦ୍ଧାରୀ ବୀରଙ୍କ ହୋଇଲା ଅଙ୍କ-ଶାୟିନା ।
"କେମନ୍ତେ ସହିବ ଏ ଦୁଃଖ ଅହେ ପରାଣ-ସାଇଁ ?
"ପ୍ରାଣ ରଖି ଯାହା ଦେଲ ହେ ଦୁଃଖାର୍ଣ୍ଣବେ ଭସାଇ !
"ମନେ କରିଥିଲି ଜୀବନେ ଯେବେ ଦୁଃଖ ପଡ଼ିବ,
"ବୀର ଧନଞ୍ଜୟ-କୃପାରୁ ପଲକରେ ତୁଟିବ ।
"ଆଜ ଯେବେ କ୍ଳେଶ ଦେଲ ହେ ଦଗ୍ଧପ୍ରାଣେ ମୋହର,
"ଶାନ୍ତି-ନୀର କିଏ ଦେବ ଅହେ ସୁଭଦ୍ରାବର ?"
ଦ୍ରୁପଦ-ଦୁଲଣୀ ଯାତନା ଦେଖି ଗାଣ୍ଡୀବଧନ୍ୱା
କୋମଳ ବଚନେ ତାହାଙ୍କୁ ଦେଲେ ବହୁ ସାନ୍ତ୍ୱନା ।
ନିଜ ଉତ୍ତରୀୟେ ପୋଛିଣ ପ୍ରିୟା-ନୟନୁଁ ନୀର,
ଚୁମ୍ବି ଚିବୁକରେ ଭାଷିଲେ ପୃଥ୍ୱୀ-ପ୍ରଖ୍ୟାତ ବୀର,
"ନିଜଗୁଣେ ଦେବି, କୃପାରେ କ୍ଷମ ଆପଣା ଜନେ,
"ଚିରକାଳ ପୂଜା ପାଇବ ମୋର ହୃଦୟାସନେ ।
"ତୁମ୍ଭ ପ୍ରତି ପ୍ରୀତି ଯେତେକ ଗୋ ! ଊଣା ନୋହିବ କେବେ,
"ଦେହେ ପ୍ରାଣ ଥାଉଁ ସେ ପ୍ରେମ ଭୁଲିବା କି ସମ୍ଭବେ ?"
ପାଣ୍ଡୁ ବୀର ପାର୍ଥ ଯାଅନ୍ତେ ଘୋର-ଦୁଃଖ-ତିମିର
ଘୋଟି ବସିଥିଲ ହୃଦୟେ; ଚକ୍ଷୁଁ ଝରିଲା ନୀର ।

ନିମିଷ ମଧ୍ୟରେ ସୁଭଦ୍ରା ଯାଜ୍ଞସେନୀ-ସଙ୍ଗରେ
ଆସି ପ୍ରଣମିଲେ ସାଷ୍ଟାଙ୍ଗେ ଗୋପାଙ୍ଗନୀ-ବେଶରେ ।
ସନମ୍ର କହନ୍ତି ସୁଭଦ୍ରା "ଦେବ ! ଦାସୀପଣରେ
"ଆସିଛୁ ଦେଖ ଗୋ ଅନ୍ୟଥା ନ ଭାବ୍ରୁ ମନରେ ।"
ଆସନୁଁ ଉଠିଣ ନରେଶ— ଦ୍ରୁପଦର ଦୁଲଣୀ
ବୀରପତ୍ନୀ ବୀରଭଗ୍ନୀର କଲେ ସେ ଅଭ୍ୟର୍ଥନା ।
ସସ୍ନେହେ ଆଲିଙ୍ଗି ଅମଳ—ଗଣ୍ଡେ ଦେଇ ଚୁମ୍ବନ
ସପତ୍ନୀକୁ ନାଗନନ୍ଦିନୀ ଦେଲେ ଆଶୀର୍ବଚନ,
"ଅସପତ୍ନୀ ହୋଇ ଦେବ ଗୋ,ଭୁଞ୍ଜ ସୁଖେ ସ୍ୱପତି;"
ସାନନ୍ଦେ ଭାଷିଲେ "ତଥାସ୍ତୁ" ବାଣୀ ସାଧ୍ୱୀ ସତୀ ।

## ନିନ୍ଦୁକ ପ୍ରତି କବିର ନିବେଦନ ।

"I pray you mar no more of my verses with reading them ill-favouredly."

*Shakspeare.*

ଲାବଣ୍ୟସୁନ୍ଦର ଆହା ଯଶସ୍ୱୀର !
ଦେଖି ଉଚ୍ଛୁଳି ଉଠେ ମୋ ଗୀତଭଣ୍ଡାର ।
ଛଳଛଳ ଢଳଢଳ ନାସ୍ୱ-ନନ୍ଦନ
ଦେଖି ମୋ କବିତା-ପକ୍ଷୀ କରେ ଗାୟନ ।

ପୀରତ-ବୋଳା ତରୁଣୀ-କନକ-ଭକ୍ଷ
ଦେଖି ମୋ କବତା-ପକ୍ଷୀ ମେଲାଏ ପକ୍ଷ ।
ହୃଦୟ-ଅବେଗ ରୋଧି ନ ପାରେ ଭାଇ,
ଭବେ ଭେଲ ହୋଇ ଗୀତ ଯାଏ ମୁଁ ଗାଇ ।
ସଂସାର-ତାପେ ତାପିତ ହେଲେ ମୋ ମନ
ହୃଦ ଫେଡ଼ ଗୁଣୁଗୁଣୁ କରେଁ ଗାୟନ ।
ଜାଣାନ୍ତା ପ୍ରମାଣେ ଦୋଷ ନାହିଁ ମୋ କଛ,
ହଟ କର କରୁ କପାଁ ଇଙ୍ଗିତ ଛ ଛ !
ରଖିଦେ ଚଳିଦେ ତୋର ଅଛା ନକଲ,
ମୋ କାର୍ଯ୍ୟେ କଣ୍ଟକ ହେବା ନୁହେ ତୋ ଭଲ ।
କପାଁ ବାଟ ଜ୍ବଲ ଗଲେ ହସ୍ତ କୋତଲ,
କପାଁ ଅଣ୍ଡା ପାଣି ଢାଳୁ ଛଳାଇ ସଲ ?
ମୋ ଘର କରେଁ ମୁଁ ଭାଇ, ତୁହି ତୋ ଘର,
କପାଁଇ ମନାସ କରୁ ମୋ ହରବର ?
ଛାଡ଼ଦେ ଛାଡଦେ ପଥ ସ୍ବସ୍ଥାନେ ଯାଏଁ,
ମନସୁଖେ ମନଗୀତ ମୋର ମୁଁ ଗାଏଁ ।
ଜ୍ଞାନ ଦେ ! ଏ ମୋ ଗୀତ ପଢ଼ଛ ତୁମ୍ଭେ ବା ଶୁଣ,
ଗରଖାତର କର ନା ତା ପୁଣ ପୁଣ ।
ଗୀତ ଶୁଣି ହୁଏ ଯେବେ କଣ୍ଟିତ ସୁଖ,
ଶୁଣିଲେ ଶୁଣନ୍ତୁ ପଢ଼ନ୍ତୁ ମୂଲ୍ୟ ମୂର୍ଖ ।

ଥିବ ଯେବେ ସେ ଗୀତରେ କଳ୍ପିତ ସାର,
ରହିବ ତା ମନେ କଣ୍ଠ ଧନ ସଂସାର ।
ପ୍ରାଣୁଁ ପ୍ରାଣାନ୍ତରେ ହୋଇ ପ୍ରତିଧ୍ୱନିତ
ନୀରବେ ରଚିବ କାଳେ ଜ୍ଞାଗସ୍ଥ ଗୀତ ।
ମୂଲ୍ୟହୀନ ହୋଇଥିଲେ ଜାଣ କଣ୍ଠସ୍ଥ,
ଜୀବନ-ଯୁଦ୍ଧରେ ଅଟପ ହେବ ବଳସ୍ଥ ।
ବନ୍ଧୁର ପ୍ରଶଂସା କିବା ନିନ୍ଦା ତୁମ୍ଭର,
ଲାଭ କ୍ଷତି ନା' କରିବ ତିଳେ ମାତର ।
କୁଟିଳ କଟାକ୍ଷେ କର୍ମୀ ହିଂସାରେ ଭରି !
କଳୁଷିତ ହୁଅ ନିଜେ ଏଇଥିପାଇଁ ?



## ସଫଳସ୍ୱପ୍ନ ।



ଶୈଶବ-ସୀମାନ୍ତେ ଯେବେ କରି ଧୂଳିଘର
କ୍ରୀଡ଼ାରେ ଆସକ୍ତ ଥିଲି ସାଥି-ସଙ୍ଗତର,
କେବଣ ଅଜ୍ଞାତ ଲୋକେ ଗୋ ମୂରତିଧର,
ଦେଖିଥିଲି ସେ ଲାବଣ୍ୟ ବେନି ନେଇ ଉର !
ନୀଳ ନଭେ କୃଷ୍ଣଘନେ ଲୋଳ ସୌଦାମିନୀ—
ରୂପେ ଦେଖିଥିଲି ତୋତେ ଲୋ ରୂପଗର୍ବିଣୀ !

ଶାରଦଚନ୍ଦ୍ରକାଧୌତ ଅନ୍ତରୀକ୍ଷଦେଶେ
ବୁଲୁଥିଲୁ ବସନ୍ତ ରେ ! ଜ୍ୟୋତ୍ସ୍ନାଶୁଭ୍ରବେଶେ ।
ଦେଖିଥିଲି ବିଜନରେ ! ସେ ବଧୂ କରଣେ
ତୋ ଅନନ୍ୟ ମଧୁରିମା ଅପତୃପ୍ତ ନୟନେ ।
କାଳକ୍ରମେ ଅଗମିଲ ମଧୁର ଯୌବନ,
ବହିଲା ହୃଦୟବନେ ଦକ୍ଷିଣା ପବନ ।
କାହିଁ ଉଡ଼ିଅଛି ତୁ ରେ ବସନ୍ତକୋକିଳ !
ସେ ବନେ କଲୁ ତୋ ସ୍ୱନେ ଆନନ୍ଦ-ଆକୁଳ ?

—୦ଃ୦—

## ସ୍ରୋତ-ସଙ୍ଗମ ।

—ଃ୦ଃ—

ଅଜ୍ଞାତ ପର୍ବତଗୁହା ଭେଦ କରଦେଶେ
ଝରିଲି କେତେ କାଳ ଅଜ୍ଞାତ ବଦେଶେ ।
ବହୁ ଦୂରେ ଜନ୍ମଗୁହା ହେଲା ଅନ୍ତର୍ହିତ,
ଉଦାସ ଉଦାସ ହେଲା ମୋର କ୍ଷୁଦ୍ର ଚିତ୍ତ ।
ଏମନ୍ତ ବହୁତ ପଥ ଯାଅନ୍ତେ ମୁଁ ବହି,
ସେ ଏକାକୀ ନିର୍ଜନତା ନ ପାରିଲି ସହି ।
କାଳକ୍ରମେ ଭେଟିଲି ମୁଁ ଏକଇ ନିର୍ଝର,
ଏତେ ଦିନେ ପାଇଲି ମୋ ପ୍ରାଣର ଦୋସର ।
ସେ ପ୍ରେମ-ନିର୍ଝରେ ପଶି ମୋ ଜୀବନ-ସ୍ରୋତ

ଢ଼ଶୃଙ୍ଗପାରକୁ ଢୋଟିଗଲା ଓତଃପ୍ରୋତଃ ।
ଝସ ନିର୍ଝର ସଙ୍ଗେ ହେଲିଁ ଅମୃଝ୍ଝରଣ,
ଉଦାର ସ୍ୱାର୍ଥତର ହେଲା ପ୍ରାଣମନ ।
ସେହି ସ୍ରୋତ ଯାଏ ପୁଣି ଅନନ୍ତ ସାଗର,
ଯହିଁ ନର ପାସୋରଇ ଭେଦ ଅମୃତର ।

---

## ମଧୁଶଯ୍ୟା ।



"O heartfelt raptures bliss beyond compare!"
*R. Burns.*

"O blessed bond of board and bed!"
*Shakspeare.*

ଅବେଳେ ହୃଦୟ ପୂରିଛି, ଜଳଇ ଦୀପ;
ରଖା ଅଛି ହୋମ-ନଡ଼ିଆ ଶଯ୍ୟା ସମୀପ ।
ଏମନ୍ତ ସମୟେ କିଏ ସେ ଗୁଞ୍ଜଇ ବାଟ,
ରଣଝଣ ପଦକ୍ଷେପଣ, ଖୋଲେ କବାଟ !
ପେଲି ଦେଇ କିଏ କାହାକୁ, ପଛୋରେ ଥାଇଁ
କହେ ଅଜଜାଇ କବାଟ, "ଫେରନ୍ତୁ ନାହିଁ ।"
ଦୀପ—ଚନ୍ଦନରେ ମନ୍ଦକି ପଡ଼ୁଛି ଦ୍ୱଅ,
ଚରଣେ ଅଳତା, ସୁନ୍ଦର ବିକାଶରେ ପ୍ରିୟ ।

କରେ କର ଧରି ନଅନ୍ତେ, ଲାଜେ ଯୁବତୀ
ଘର୍ମାର୍ଦ୍ର ସକଳ ଶରୀର, କମ୍ପିତା ଅତି ।
ବସନ୍ତ-ଅନିଳେ ଯେ ଗମନ୍ତେ କମ୍ପିତ କାଳ ;
ବଶାନ୍ତା ନବୀନା, ବଦନ୍ତୁ ଶରମ-ଝାଳ ।
ମନେ କଲି ଅଙ୍ଗ ବଞ୍ଚିବ, ଏବେ କି ହେଲ !
ଝିଁପିଝିପି-ଝିପା-ଶବଦ ଦ୍ୱାରେ କେ ଦେଲା ।



## ତରୁଣୀତନୁ ।



"Beauty is truth, truth beauty."
*Keats.*

ଜ୍ଞାନ-ଆନନ୍ଦର ଦ୍ୱାରି ପଞ୍ଚ-ଇନ୍ଦ୍ରିୟର
ନୟନ ଅଟଇ ଜଗତେ ସାର ଶ୍ରେଷ୍ଠତର ।
ବର୍ଣ୍ଣି କିବା ଆକୃତରେ ମନୋରମ ଅତି—
ଲୋଚନବିଷୟୀଭୂତ ଲାବଣ୍ୟ-ମୂରତି,
ଶ୍ୟାମଳ କେଦାର, ଅବା ସୁନୀଳ ଗଗନ,
କୁସୁମ, ବିହଙ୍ଗ, ତରୁ ମାନବ-ଆନନ—
ସମସ୍ତ ସୁନ୍ଦର, କିନ୍ତୁ ତରୁଣୀର ତନୁ
ବାରେ ନିରେଖିଲେ ଅନ୍ୟ ନ ପାସୋରେ ମନୁ ।

କ ପୀୟୁଷ ବର୍ଷିକମା ଢାଳିଅଛ ତହିଁ !
ସେତକ ସୁନ୍ଦର ଦଶେ କେବେତ ନ ଦେଖିଲି ।
ତନୁର ଲାବଣ୍ୟ କ ଗୋ ଦେହସ୍ଥ ଅତଶୟ,
ସୁପ୍ତ ତହିଁ ପାପ-କାଳକୂଟ କାମମୟ ?
ଅଛି ରୂପ ଅପରୂପ; କାହିଁ ତା କାହାର ?
ତଥାପି ତରୁଣୀ-ଶୋଭା ସଂସାରେ ପ୍ରସାର ।
ଅଛଇ ତହିଁରେ ଦିବ୍ୟପବିତ୍ରତା-ଛବି,
ସାକ୍ଷୀ ତାର ଜଗତର ସର୍ବଶ୍ରେଷ୍ଠ କବି ।

—:o:—

## ନୟନର ଭାଷା ।



ନିବଦ୍ଧ ପାର୍ଥିବ-ଅର୍ଥେ ମାନବର ଭାଷା
ନ ପାରେ ପ୍ରକାଶି ପ୍ରାଣ ଅନ୍ତଃସ୍ଥଳ-ଆଶା ।
ନିତାନ୍ତ କୋମଳ ପ୍ରେମ ନିତାନ୍ତ ତରଳ,
ପ୍ରକାଶିବ ବାକ୍ୟ ତାହା କାହିଁ ତାର ବଳ !
ଅତି ସୂକ୍ଷ୍ମ ପ୍ରେମ, ତାହା ନ ସହଇ ଭାଷା,
ବାକ୍ୟପ୍ରକାଶିତ ପ୍ରେମେ ନ ମେଣ୍ଟଇ ଆଶା ।
ମେଣ୍ଟାଇବା ଲାଗି ପ୍ରାଣ-ପ୍ରଣୟ ପିଆସା
କ୍ଷଣ ମାତ୍ର ପ୍ରଣୟୀଙ୍କ-ନୟନର ଭାଷା ।
ନିପଳାର ଅଭିଳାଷ ପ୍ରିୟାର ଲୋଚନ

କବା ଦବ୍ୟସ୍ଥାଦିକ୍ତ କରେ ସ୍ନିଗ୍ଧମନ ।
ନୟନେ ନୟନେ ହୁଏ କଥାବାର୍ତ୍ତା ଯାହା,
ପ୍ରଣୟିଯୁଗଳ ଛଡ଼ା କେ ବୁଝିବ ତାହା ।
ପୀୟୂଷ ପ୍ରଣୟି-ନେତ୍ରୁଁ ପିଇଛି ଯେ ଜନ,
ଅର୍ଥବଦ୍ଧ ବାକ୍ୟେ ତାର ନ ମାନଇ ମନ ।

## ମାନସୀମୂର୍ତ୍ତି ।

ଦୂରେ ଥାଅ ଦେବି ତେବେ ନ ଆସ ମୋ ପାଶ,
ମୋହ-ମରୀଚିକା ମୋର ନ କର ବିନାଶ ।
ପାଦ୍ୟ ଅର୍ଘ୍ୟ ଦେଇ ସଦା ହେ ରମ୍ୟ ସୁନ୍ଦର ।
ସେ ବରେଣ୍ୟ ପ୍ରତିମାକୁ କରି ନମସ୍କାର,
ପ୍ରାଣର ସଙ୍ଗୀତ ଦେବେଣି କରିବ ମୁଁ ସ୍ତବ,
ଦେଖିବ ସେ ଗୁରୁ ମୂର୍ତ୍ତି ଚିର ଅଭିନବ ।
ଢଅ ନାହିଁ ଟେଗ ବନ୍ଧୁ ନ ଭଙ୍ଗ ମୋ ମୋହ,
ନ ଉଠାଅ ଯୁଦ୍ଧ ପ୍ରାଣେ ଦାରୁଣ ବିଦ୍ରୋହ ।
ପରଶେ ମଳିନ ହୁଏ ବିକଚ ପ୍ରସୂନ,
ଅପଚାର ଯାଏ ସ୍ପୃହା ମରୀଚିକାପୂର୍ଣ୍ଣ ।
ଭକ୍ତି-ପୁଷ୍ପାଞ୍ଜଳି ଢାଳି ମୋ ମୁଗ୍ଧ ହୃଦୟୁ
ଦୂରରୁ ପ୍ରଣମୁ ସଖୀ ଚିରବରେଣ୍ୟ ।
ଅପସାରି ମୋହ ମୃଗ-ତୃଷ୍ଣିକା ଉପ୍ଳୁତ ।
ସେ ମଧୁର ସ୍ୱପ୍ନୁଁ ସଖୀ ନ କର ବଞ୍ଚିତ ।

## ସ୍ମୃତି ।



"Tears, idle tears, I know not what they mean,
"Tears from the depth of some divine dispair
"Rise in the heart and gather to the eyes,
"In looking on the happy Autumn-fields,
"And thinking of the days that are no more."

*Tennyson.*

ଶୈଶବେ ବୁଲୁ ଥିଲି ମୁଁ ଗହନ କାନନେ,
ଖେଳୁଥିଲି ତରୁତଳେ ଛାୟା ମନେ ମନେ ।
ଝରଝର ଝରୁଥିଲା ନିର୍ଝରୁ ଝରଣା,
ଦିବ୍ୟ ଲୋକ ସମ ବନ ଯାଉଥିଲା ଜଣା ।
କୋକିଳ ପଞ୍ଚମେ ଦୂରେ କରୁଥିଲା ସ୍ୱନ,
ପୂର୍ବସ୍ମୃତି ବିଜଡ଼ିତ ହେଲା ମୋର ମନ ।
ରକ୍ତପଦ୍ମ ଫୁଟିଥିଲା ବନ-ସରୋବରେ,
ରଥାଙ୍ଗମିଥୁନ ରମୁଥିଲେ ତା ତଟରେ ।
ବନ ସ୍ଥଳେ ଗିରିନଦୀ ଯାଉଥିଲା ବହି,
ଲତାପୁଷ୍ପେ କମ୍ପୁଥିଲେ କ୍ଷଣେ ରହି ରହି ।

ହୂଲଦ୍ଧବସନ୍ତ-ଶୁକ-ଶାରକା-ଭରତ—
ସ୍ୱନେ ବନପ୍ରାଣ ହୋଉଥିଲାଖ ଉଷନ ।
ଏମନ୍ତ ପ୍ରକୃତ-ଛବ ଦେଖି କପାଁ ମନ
ଅତୀତସ୍ମୃତିରେ ଅନ୍ଧା ହିନ୍ଦାଇଲା ବଟଣ୍ଡ ।



# ଉତ୍କଳଭାରତୀ ।



ଉତ୍କଳଭାରତୀ ଦେବି ! ସ୍ୱଭାବପ୍ଳନସି ।
ଭକତବାଞ୍ଛିତ ପୂର୍ଣ୍ଣ କର କୃପା କରି ।
ନେଇ ଯାଅ ମୋତେ ସେହି ଅତୀତ ନିକୁଞ୍ଜେ,
କବିତାକୁସୁମେ ଯହିଁ କବି-ଅଳି ଗୁଞ୍ଜେ ।
ବିଦେହନନ୍ଦିନୀ ଯହିଁ ଅଶୋକବିପିନେ
ରାକ୍ଷସୀବେଷ୍ଟିତା ହୋଇ ବିଳାପନ୍ତି ଦିନେ ।
ଅଥବା ଜାହ୍ନବୀତୀରେ ମୁନିତପୋବନେ
ଭ୍ରମନ୍ତି ଦୌହିତ୍ରବତୀ ଗହନ ଅରଣ୍ୟେ ।
ଅବା ଚିରପତିସୂତା ସୋରନପୋରତ
ନଦୀର ଶିଶିରେ ବର୍ଷା କରନ୍ତି ବାନ୍ଧବ ।

କବା କଣ୍ୱ ତପୋବନେ, ଶକୁନ୍ତଳା ସତୀ
ଦୁଷ୍ୟନ୍ତଭାବନା-ନୀରେ ବୁଡ଼ି ରହିଛନ୍ତି ।
ଅବା ଘନ ଘୋରାରଣ୍ୟେ ତ୍ୟକ୍ତା ଦମୟନ୍ତୀ
ପ୍ରିୟତମ ନଳ-ନାମ ଉଚ୍ଚାରି କାନ୍ଦନ୍ତି ।

## ସୀତା ।

ବିପୁଳ ଭାରତ-ମଧ୍ୟେ କ୍ଷୁଦ୍ରାଂଶ ବିଦେହେ
କ୍ଷୁଦ୍ରତର ରାଜପୁରେ କ୍ଷୁଦ୍ରତମ ଗେହେ
ଜନ୍ମିଥିଲ ଦୂର—ଅତି ଦୂର ଅତୀତରେ,
ଯାଉ ଦେଲ ମଧ୍ୟ କେତେ ଯୁଗଯୁଗାନ୍ତରେ,
ମିଶିଗଲି କେତେ କଥା ବିସ୍ମୃତି-ଉଦରେ,
କେତେ ପୂର୍ବ କୀର୍ତ୍ତି ସଙ୍ଗେ ଦିଗଦିଗନ୍ତରେ ।
ସତୀ ସାଧ୍ୱୀ ରାଜରାଣୀ ନାରୀଶିରୋମଣି
ଜନମ ଦୁଃଖିନୀ ମାତଃ ପଥ-ଭିକାରିଣୀ ।
ଅପାର ଯନ୍ତ୍ରଣା ସହି ନୃପତି-ଲଳନା
ଦେଶେ ଦେଶେ ଉଡ଼ାଇଛ କୀର୍ତ୍ତିର ବାନା ।
ନାରୀତ୍ୱର ସତୀତ୍ୱର ଶ୍ରେଷ୍ଠ ଆଦର୍ଶ
ସ୍ଥାପିଛ, କରିଛ ତାହା ଦେବଲୋକ ସ୍ପର୍ଶ ।
ଯାବତ ସତୀତ୍ୱ ଭବେ ପାଉଥିବ ପୂଜା
ସର୍ବାଗ୍ରେ ନମସ୍ୟା ସାଧ୍ୱୀ ବିଦେହତନୁଜା ।

# ପାର୍ବତୀ ।



ଜନକଜନଦେଶେ କଲ ହିମାଦ୍ରି ତନୁଜା !
ବିଭୂତିଲେପିତତପିଶିବପଦ-ପୂଜା ।
ତରଳାକ୍ଷି ! ପ୍ରତ୍ୟାଖ୍ୟାନ କରୁଁ ନଗୋଧନ
ଗହନ ବିପିନେ ହେଲ ତପୋନିମଗନ ।
ନିରେଖି ଗଭସ୍ତିମାଳୀ ଅସ୍ତୃତଲୋଚନେ
ପ୍ରଚଣ୍ଡ ନିଦାଘ ଋତୁ ଯାପିଲ ସେ ବନେ ।
ପରିହୃତ ହେଲ ପୀନ ଜତମେ ଲେଙ୍ଗୁଟି,
ଓରିଲା ଶରୀର ଦେଖି ପଶ୍ଚାଗ୍ରେ ଭ୍ରୁକୁଟି ।
ତପାତ୍ୟସ୍ତେ ସୁକୁମାର ! ସାନ୍ଦ୍ର ଚିର ବନ,
କଲ ଝଙ୍କାଳିଆ ତରୁତଳରେ ସାଧନ ।
ଶିଶିରେ ଗୁଡ଼ଁଗୁଡ଼ଁନ୍ନା ଚିରହିମଜଳେ
ବୁଡ଼ିଲ ତନୁମଧ୍ୟମା ତୁଣ୍ଡୋଳକ ତଳେ ।
ତପେ ତପୀ ପିନାକୀଙ୍କୁ କିଣିଲ ଅବଳା !
ଗୁରୁ ଯୁଗେ ସମ୍ମସଙ୍ଗ ତୁମୂର ରହିଲ ।



# ଦମୟନ୍ତୀ ।



କଳିପ୍ରବେଶତ ନଳ ଅନୁଜ ସଙ୍ଗତ
ଦ୍ୟୁତବ୍ୟସନରେ ମାତ ହାରିଲେ ସମସ୍ତ ।
ନିଷାପତ ରାଜା [illegible]ବ ଜନକଭବନ-
ପ୍ରସ୍ଥାଣ ନ[illegible]ଗ ଅଧେ ବାହାରିଲେ ବନ ।
ବନଯାତ୍ରା ନଳ ରାଜା ଯେତେ କଲେ ମନା,
ପତି ପାଶେ ସେତେ ଅଳି କଲ [illegible]ଚନା ।
ପଥେ କଳିପ୍ରବେଶତ ଦୁର୍ବୁଦ୍ଧି ରାଜନ
ଏକାକିନୀ ତେଜି କାନ୍ଥେ କଲେ ପଳାୟନ !
ବିଜନ ଗହନ ବନେ ଉଗାଳିଲା ଅହି,
ବ୍ୟାଧ ନାଶ କଲା ତାକୁ ଅନ୍ୱେଷିଲେ ରହି ।
ଲାବଣ୍ୟବଳିତ ତନୁ ଗୃହ୍ଣି ଶବର
କରୁଥିଲା କାମମୂଢ଼ ହୋଇ ଅତ୍ୟାଚାର ।
ସାଧ୍ୱୀଦର୍ପେ ସେ ଲମ୍ପଟେ କଲ ପରାଜିତ,
ପତିପଥ ଗୁହ୍ନି କଲ ସମସ୍ତ ଯାପିତ ।



# ଶକୁନ୍ତଳା ।



ପ୍ରଚଣ୍ଡ ମଧ୍ୟାହ୍ନ କାଳ ଦୃପ୍ତ ଦିବାକର
ନିର୍ବେଦନମଗ୍ନ ବନବିଟପିନିକର ।
ରୋମନ୍ଥନଯୁକ୍ତ ପଶୁ ତରୁ-ଛାୟା-ତଳେ,
ନିଃଶବ୍ଦ ନିଶ୍ଚଳ ପକ୍ଷୀ ପକ୍ଷବନ୍ଧନେ ।
ମାଲିନୀପୁଳିନେ କଣ୍ୱମୁନି-ତପୋବନେ
ବସିଛି ଏ କିଏ ବାମା ବିଷଣ୍ଣବଦନେ ?
ଭାବନା-ବାରିଧି-ନୀରେ ଅଛି ପ୍ରାଣ ବୁଡ଼ି,
କଳ୍ପନା-ଗଗନେ ଅବା ଯାଇଅଛି ଉଡ଼ି ।
ପୁରବତେ ପ୍ରବେଶି ତେଜୋରୂପୀ ତପୋବର
ଗର୍ଜନ୍ତି "ଅୟମହଂ ଭୋଃ," ନାହିଁ ତା ଉତ୍ତର !
"ଅବଚେହନ୍ତି—ଯେ'ଦୁଷ୍ୟନ୍ତେ ଭକ୍ତି—ତପୋଧନେ,
"ନ ଚିହ୍ନିବ ସ୍ମାରିତ ସେ ହୋଇ, ବିଚେତନେ"—
ଭାଷିଣ ଦୁର୍ବାସା କ୍ରୋଧୀ ଚଳିଗଲେ ଚାହିଁ,
ସତୀର ସମାଧି ଅହା ଟଳିଲା ତ ନାହିଁ !



# ଯୁଗଚିତ୍ର ।



୧

ସରଯୂ-ତଟିନୀ-ତଟେ ସାକେତ-ନଗରୀ,
ସୁରଧୂନୀ-ତୀରେ ଯେସନେ ସ୍ୱର୍ଗବିଦ୍ୟାଧରୀ ।
ଏଥି ରାମ ନରେ[illegible]ରେ ମହର୍ଷୀ ସଙ୍ଗତ
ତେଜି ରାଜ୍ୟ ଯାନ୍ତି ବନେ ପାଳି ସତ୍ୟବ୍ରତ ।
ବନ୍ଧୁ ଚୀର କଉପୀନ ଜଟା ମହାଭାର,
ଭକ୍ଷି ବନ-ଫଳମୂଳ, ସୁଖ-ଦୁଃଖେ ଧୀର ।
"ହା ରାମ ଲକ୍ଷ୍ମଣ" ଝୁରି, ଝୁରି "ରାମ ସୀତା"
ସତ୍ୟାର୍ଥେ ତେଜନ୍ତି ପ୍ରାଣ ଦଶରଥ ପିତା ।
ତରୁଣୀ ଉର୍ମିଳା ତେଜି ତରୁଣ ଲକ୍ଷ୍ମଣ
ଅନ୍ୱେଶ୍ୟ ଅଗ୍ରଜ ସଙ୍ଗ କରନ୍ତି ଗମନ ।
ମାତୁଳ-ଆଳୟୁଁ ଫେରି ଭରତ-ନନ୍ଦନେ
ଧାବନ୍ତି ଶ୍ରୀରାମ ପଛେ ଧରି ଯତିବେଶ ।
ପ୍ରଧାନ ବଶିଷ୍ଠ ଏଥି ତତ୍ତ୍ୱଜ୍ଞ ବ୍ରାହ୍ମଣ,
ହୋମ-ଆଜ୍ୟ-ଗନ୍ଧ କରେ ମାନସ ହରଣ ।

୨

ଅଗାଧ ଜଳଧି ମଧ୍ୟେ ସ୍ୱର୍ଣ୍ଣଲଙ୍କାପୁରୀ,
ନରସୁ-ଗନ୍ଧର୍ବରେ ଯେସନେ ମାୟାବୀ ଅପ୍ସରୀ ।

ଲମ୍ପଟ ଯୋଧାନ୍ଧ ଏଥି ରକ୍ଷେଶ ରାବଣ
ଛଦ୍ମବେଶେ ପରନାରୀ କରଇ ହରଣ ।
ଅତୁଳ କାଞ୍ଚନ-ଗଢ଼ ଅପୂର୍ବ ସୁନ୍ଦର,
ହୀରକ-ମାଣିକ୍ୟ-ମୁକ୍ତା-ମଣ୍ଡିତ ନଗର ।
ଅସଂଖ୍ୟ ରମଣୀ ସଙ୍ଗେ କାମରସେ ରତ
ଧେନୁ ମଧ୍ୟେ ବୃଷ ସମ ରାବଣ ଉନ୍ମତ୍ତ ।
ରାକ୍ଷସଭଗିନୀ ଏଥି ଶୂର୍ପଣଖା ନାରୀ
ପର-ପୁରୁଷଙ୍କୁ ଦେଖି ହୁଏ କାମେ ଘାରି ।
ସହୋଦର-ଲକ୍ଷ୍ମଣେ-ହୃତ-ନାସିକା ଦେଖି
ଶୁଣ ଅପମାନ ହୁଏ ପାତକୀ ରକ୍ଷେଶ ।
ଅସଂଖ୍ୟ ସୈନ୍ୟବୃନ୍ଦ ଏ ପୁରେ ପ୍ରଧାନ,
ମନ୍ଦିର ଗନ୍ଧରେ ପୂର୍ଣ୍ଣ ଏଥି ଜନମାନ ।

—:✿:—

## ସୁଲକ୍ଷଣା ଦେବୀ ।

—✿—

ଧନ୍ୟ ସୁଲକ୍ଷଣା ଦେବୀ ସୁଲକ୍ଷଣବତୀ !
ପବିତ୍ର ବୈକୁଣ୍ଠ-ଧାମୁଁ ଦେବ ନମୋ ପ୍ରଣତି ।
ଦରିଦ୍ର ପତିତ ହୀନ-ଲାଞ୍ଛିତ କୁଳରେ
ଜନ୍ମିଥିଲ ଭବ୍ୟବତୀ ! କେଉଁ ପୁଣ୍ୟବଳେ ?
ଥିଲ ଖଡ଼କୁଡ଼-ପଦ୍ମ ଶ୍ମଶାନ-ତୁଳସୀ
କୃଷ୍ଣପକ୍ଷ-ଅନ୍ଧାରରେ ପ୍ରଥମଦ-ଶଶୀ ।

ଉତ୍କଳ-ଭାରତୀ-କଣ୍ଠେ ଉତ୍କଳୀୟ ବାଳା
ଲମ୍ବାଇଛ ମାତଃ ! ଏବେ "ପାରିଜାତମାଳା" ।
ପ୍ରକୃତିର ପ୍ରିୟଶିଷ୍ୟା ଥିଲ କଷ୍ଟାବତୀ !
ଉଡ଼ାଇଛ ନାରୀ-ପ୍ରତଭାର ବୈଜୟନ୍ତୀ ।
କେଉଁ ଦେବକନ୍ୟା ଅସି ଜନ୍ମି ଏ ଉତ୍କଳେ
ଦେଇଅଛ ମହାଶିକ୍ଷା ଗୀତକାବ୍ୟ ଛଳେ ।
ତୁମ୍ଭ ସମ ବୁଦ୍ଧିମତୀ ନାରୀ ଯେଉଁ ଦେଶେ
ଜନ୍ମନ୍ତି, ଉନ୍ନତ ତାର ହେବ ଅବଶେଷେ ।

—ଃ୦ଃ—

## ଉତ୍କଳ-କବି ରାୟ ରାଧାନାଥ
## ରାୟ ବାହାଦୁର ।

୧

ମାତୃଭୂମି-ପ୍ରିୟକବି ରାୟ ରାଧାନାଥ,
ଧନ୍ୟ ତବ ଜନ୍ମଭୂମି ଧନ୍ୟ ମାତା ତାତ !
କପିଶା-କୂଳରୁ ଆଜ ଚନ୍ଦ୍ରକାନ୍ତଦେଯାଏ
ଉଦ୍‌ଘୋଷିତ ହୁଏ, "ଧନ୍ୟ ରାଧାନାଥ ରାଏ !"
ଉତ୍ତୁଙ୍ଗପର୍ବତ-ଶିଖେ କର ଆରୋହଣ
କରୁଛ ଦୁନ୍ଦୁଭି-ମନ୍ଦ୍ର ବୀର-ଉନ୍ମାଦନ,
ମୋହନ ମୁରଲୀ କେବେ ବାଇ ତରୁ-ତଳେ
ତରୁଣ-ତରୁଣୀ-ମନ ମୋହୁଅଛ ବଳେ;

ନିର୍ଜନ ଶ୍ମଶାନେ କେବେ ହେ ବୈରାଗୀ କବି !
ମଗ୍ନ ହୋଇ ଚିନ୍ତ "ଭବ-ନଶ୍ୱରତା-ଛବି ।
ନବରସ-ବର୍ଣ୍ଣନାରେ ହେ ରସିକବର !
କାବ୍ୟରାଜପୂଜ୍ୟ ହୋଇ ରହିଛ ତୁମ୍ଭର ।
ପ୍ରତିଭା କବିତ୍ୱ ବିଦ୍ୟା ବିନମ୍ର କରୁଣା—
କେଉଁ ଗୁଣେ ରାଧାନାଥ ! ନୁହ ତୁମ୍ଭେ ଊଣା ।

୨

ପାର୍ବତୀ, କେଦାରଗୌରୀ, ଯଯାତିକେଶରୀ,
ଉଷା, ମହାଯାତ୍ରା ସଙ୍ଗେ ନନ୍ଦିକା-ଈଶ୍ୱରୀ,
ତୁଳସୀସ୍ତବକ, ଚନ୍ଦ୍ରଭାଗା, ଉତ୍ତୁବଶୀ,
ଚିଲିକା, କବିତାବଳୀ ଲେଖିଅଛ ବଳି;
ମେଘଦୂତ-ଅନୁବାଦ କରିଅଛ କବି,
ଚିତ୍ରିଅଛ ଦଶରଥ-ବିୟୋଗର ଛବି ।
ସିନ୍ଧୁ, ହ୍ରଦ, ନଦୀ, ବନ, ପର୍ବତ, ପ୍ରାନ୍ତର,
କେଦାର, ମନ୍ଦିର, ଦୁର୍ଗ, ପଥ, ଘାଟ, ଘର,
ଇତିହାସ-କାବ୍ୟକୁଞ୍ଜେ ସଜ୍ଜିତ ରତନ
ଉଦ୍ଧାରି ଜଗତେ କବି ! କରିଛ ଅର୍ପଣ ।
ତେଣୁ ଚିର ବନେ ଦୋଳି ଖେଳି ବନବାଳା,
ଜଳଦେବୀ ଅନ୍ତରଙ୍ଗଣ ସିନ୍ଧୁବୀଚମାଳା,

ପୁରାତନରୁଚିଯୁକ୍ତ ପଣ୍ଡିତସମାଜ,
ନବ୍ୟଶିକ୍ଷାପ୍ରାପ୍ତ ଯୁବା ଉତ୍କଳୀୟ ଆଜ
କବିବର ! ତବ ଯଶ ଗାଆନ୍ତି ସମସ୍ତେ,
ନମସ୍ତେ ସ୍ୱଦେଶ-କବି ! ନମସ୍ତେ ନମସ୍ତେ ।

୩

ଏ ଜଗତେ ସଦା ବୀଣାପାଣି-ଭକ୍ତଗଣ
ଦରିଦ୍ରତା-ଅନ୍ଧାରେ ଯାପିବେ ଜୀବନ—
ଏହି ଆମ୍ଭ କବି-କୁଳେ ହୋଇଛି ଲକ୍ଷିତ,
ସର୍ବ କବି-ଜୀବନରେ ଏହା ପ୍ରମାଣିତ ।
ବିଶେଷେ ଉତ୍କଳଭୂମି ଅଶିକ୍ଷିତ, ଦୀନ,
ଶିକ୍ଷିତ, ପଦସ୍ଥ, ଧନୀ ଏଥି ଉଦାସୀନ ।
କିନ୍ତୁ ଅହେ ସୁପଣ୍ଡିତ ସୁଯୋଗ୍ୟତାବଳେ,
ପଡ଼ି ନାହିଁ ଦରିଦ୍ରତା-ଦାରୁଣକବଳେ ।
ଦରିଦ୍ର ଉତ୍କଳ; କିନ୍ତୁ ଭକତିସମ୍ମାନ
ତୁମ୍ଭଙ୍କୁ ସେ କବିବର ! କରିଛି ପ୍ରଦାନ ।
ଘେନ ଦୂର୍ବାକ୍ଷତ-ଯୁକ୍ତ ଅର୍ଘ୍ୟର ଡାଲିଆ,
ପୁଷ୍ପଚନ୍ଦନାଦି-ପୂର୍ଣ୍ଣ ବନ୍ଦାଣ-ଥାଳିଆ,
ଘେନ, ଦେଖ ଦିବ୍ୟନେନେ, ଭକ୍ତି-ପୁଷ୍ପହାର
ତବ କଣ୍ଠେ ପ୍ରିୟ କବି, ଦିଏ ଉପହାର ।

—✠—

# ଜନନୀଙ୍କ ସ୍ମୃତି ।

—:o:—

"Faithful remembrancer of one so dear,
"O welcome guest, though unexpected here !"

*W Cowper,*

୧

ଏ ମଧୁର ସ୍ମୃତି ଆଜ ପଡ଼ିଲ ରେ ମନେ,
ଏ ବରେଣ୍ୟ ମୂର୍ତ୍ତି ମୋର ନାଚଇ ନୟନେ !
ମୋ ପ୍ରାଣ-ଜନନୀଙ୍କର ମଧୁରମୂରତି—
ସୁଦୂର ଶୈଶବ-ସ୍ମୃତି ଅସ୍ପଷ୍ଟ ତ ଅତି ।
ବଧିର ଦାରୁଣ ବିଧି ଶିରୋଧାର୍ଯ୍ୟ କରି
ଶୈଶବେ ତେଜିଲେ ମୋତେ ଜନନୀ ମୋହର ।
ଅମୃତ-ମଧୁର ତାଙ୍କ କୋମଳ ବଚନ,
ଦୟା-ସରଳତା-ଭୋଳା ଆୟତଲୋଚନ,
ପ୍ରଶାନ୍ତ ସରଳ ମୂର୍ତ୍ତି, ଗମ୍ଭୀର ଗମନ,
ଗୃହକର୍ମେ ତତ୍ପରତା, ସଖୀ-ସମ୍ଭାଷଣ,
ସହାସ-ଆନନ ଆମ୍ଭ ସାଧୁ ଆଚରଣେ,
କଠୋରତା-ଶୂନ୍ୟ ଦଣ୍ଡ ଦୋଷ-ଦରଶନେ,
ବିଗତ ଜନମ-ବାର୍ତ୍ତା—ଅସ୍ପଷ୍ଟ ସ୍ୱପନ—
ସମ ମୋର ସ୍ମୃତିପଥେ କରେ ବିଚରଣ ।

୨

ଅତି ପ୍ରତ୍ୟୁଷରୁ ମାତା ତେଜିଣ ଶୟନ,
ପ୍ରାତଃକାର୍ଯ୍ୟ କରୁଥିଲେ ସ୍ନାନ ସମାପନ ।
"ଭଗବତ-ଗୋସାଇଁ"ଙ୍କ ଭୋଗ-ଆୟୋଜନ,
କରୁଥାନ୍ତି ନ ଅପୂର୍ଣ୍ଣ ପୂଜକ ବ୍ରାହ୍ମଣ ।
ଅପାର ଆନନ୍ଦ ମାତା ପାଉଥିଲେ ତୋଷି—
ନ ଖାଇ ନ ପିନ୍ଧି—ଯୋଗୀ,ଦୁଃଖୀ,ଢେଙ୍କୀ, ଉପୋଷୀ।
ସର୍ବେ ଥାଏ ପୋଡ଼ପିଠା, ଦୁଧ, ଦୁଧସର,
ଦଅନ୍ତି ସ୍ୱହସ୍ତେ ମୋତେ ଜନନୀ ମୋହର ।
କହୁଥିଲେ ମାତା ଥରେ ଧରି ମୋତେ କୋଳେ,
"ଲକ୍ଷିରୁ ତୁହ୍ମ ମୋ ନାମ", ଚୁମ୍ବି ମୋ କପୋଳେ।
ଅଧମ ସୁତର ମାତଃ ଦେଖି କି ଲକ୍ଷଣ,
କହୁଥିଲ ଏହିପରି ଭବିଷ୍ୟ ବର୍ଣ୍ଣନ ।
କହନ୍ତୁ ଏ କଥା ସବୁ ତବ ସଖୀଗଣ,
ତେଜି ମୋତେ କାହିଁ କଲ ଅକାଳେ ଗମନ ?



# ଭଗିନୀଙ୍କ ଉପହାର ।



"They sin who tell us love can die."

*Southey.*

କି ମହାର୍ଘ-ଉପହାର ଆଣିଲୁ ଏଥର,
ଅଛନ୍ତି ତ ଭଲ ପ୍ରାଣ-ଭଗିନୀ ମୋହର ?
ଅଥବା ଭ୍ରାତାକୁ ଏବେ ଦବଦେଇ ଭଗ୍ନୀ,
ପାସୋରି କପାଇଁ ମନେ ପକାଇଥିଲ ପୁଣି ?
ନିମୃତ-ନିଦେଶେ ଯେବେ ଦେଖିଣ ବିଦାୟ,
ଆତ୍ମା-ପକ୍ଷୀ ଉଡ଼ିଯିବ ତେଜି ଏ କୁଳାୟ ।
ସେତେବେଳେ ଭଗିନୀ କି ଅଧମ ସୋଦରେ
ସଜଳନୟନେ ମନେ ପକାଇବେ ଥରେ ?
ମୃତ୍ୟୁ ପରେ ଜଣେ ହେଲେ କରିବ ସ୍ମରଣ,
ଏ ଚିନ୍ତାରେ ଆନନ୍ଦିତ ହୁଏ ମୋର ମନ ।
ଜ୍ଞାନିଜନେ କହୁଥାନ୍ତି 'ପ୍ରୀତି ଅନଶ୍ୱର',
ସ୍ୱର୍ଗେ କି ରହିବ ସ୍ନେହ ତାଙ୍କର ମୋହର ?
କହିବୁ ତୁ ଭଗିନୀଙ୍କି ଦରିଦ୍ର ଭ୍ରାତାର
ନାହିଁ ଶକ୍ତି ଦେବ ତାଙ୍କୁ ପ୍ରୀତି-ଉପହାର ।

# ବର୍ଷାବଦନୀ ।



"Like a high-born maiden
In a palace tower
Soothing her love-laden
Heart in secret hour
With music sweet as love, which overflows
her bower,"
*Shelley.*

ଶରତ-ବସନ୍ତ-ବର୍ଷା-ଗ୍ରୀଷ୍ମ-ହିମ-ଶୀତେ
ପ୍ରଭାତ-ପ୍ରଦୋଷକାଳ-ମଧ୍ୟାହ୍ନ-ନିଶୀଥେ
କିଏ ତୁମ୍ଭେ ବର୍ଷାବଦନ ! ସୁକରୁଣ ସ୍ୱନେ
ଝୁରୁଣ କାହାକୁ ଗୀତ ଗାଅ ମନେ ମନେ ?
କି ଗୀତ ଗାଉଛ ଅହା ଦିବ୍ୟ ସୁଧା ଜିଣି
ମଧୁର ପଞ୍ଚମ ସ୍ୱରେ ବିହଙ୍ଗରଙ୍ଗିଣୀ !
ଯେହ୍ନୁ ଇଚ୍ଛା ହୁଅ, କିନ୍ତୁ ସଙ୍ଗ ଶୁଦ୍ଧଶୀଳା !
କୋଟିକେ ଗୋଟିଏ ମିଳେ ଏପରି ମହିଳା ।
ଜୀବନ-ବସନ୍ତେ ପର ପ୍ରାଣର ପ୍ରଣୟୀ
ତେଜଣ ତୁମ୍ଭଙ୍କୁ ପାଇଛନ୍ତି ପ୍ରେମମୟି !
ଧନ୍ୟ ତବ ପିତା ମାତା ! ଧନ୍ୟ ତ୍ରିସନ୍ଧି ବଂଶ !
ଏମନ୍ତ ଦୁହିତାରତ୍ନ ଯହିଁ ଅବତଂଶ ।
ଶତଗୁଣେ ଭାଗ୍ୟବନ୍ତ ପ୍ରିୟତମ ଜନ,
ଦିବ୍ୟ ଧାମୁ ତୁମ୍ଭଙ୍କୁ ଯେ କରନ୍ତି ଦର୍ଶନ ।

## ଉତ୍କଳ-ଲକ୍ଷ୍ମୀ ।

—:o:—

ତୁଙ୍ଗ ଗିରି ଘନ ବନ ସିନ୍ଧ ନଦୀବ୍ରଜ—
ଶ୍ରୀମକାନ୍ତ ବେଶେ ଅଛୁ ଅଯତନ ସାନ୍ନ ।
ଶ୍ୟାମଳ କେଦାରଯନ୍ତ୍ର ଧଗନ୍ତ୍ରବସ୍ତାସ,
ଦେଖି ସ୍ୱର୍ଣ୍ଣବର୍ଣ୍ଣ ଫଳ ପ୍ରାଣଦାନକାଷ୍ଠ,
ଧଗଧବନ୍ତ୍ରରୁ ଆସି ବୈଦେଶିକଗଣ
କରନ୍ତ ସ୍ୱଚ୍ଛନ୍ଦେ ସୁଖେ ଜୀବନ ଅର୍ଜନ ।
କୋଟି ସୁତେ ଘୋର ଦୁଃଖେ ଖଟି ବାରମାସ
ବେଳେ ଖାଇ ଦୁଇବେଳ ରହନ୍ତ ଉପାସ ।
ଔଦାସୀନ୍ୟ-ଅବସାଦ-ନିଦ୍ରା-ନିଗମନ,
ଅସାର ସଙ୍କୀର୍ଣ୍ଣ ଗର୍ବେ ଆନେ ଧରେ ଜନ ।
ସ୍ୱଜାତି-ନନ୍ଦନ୍ତୁକ ଦେଇ ଭକ୍ତି, ପାନାହାର
ତୋର ବରପୁତ୍ରଗଣ ଉଦାସ ଉଦାର ।
କେବେ ପାର ହେବ ଦୁଃଖ-ଦଶା ମା ତୋହର,
ତୋ ସୁତେ କରିବେ ନିଜ ଧନେ ନିଜ ଘର ?



# ବସନ୍ତ-କୋକିଳ ।



୧

ବସନ୍ତନିଶାନ୍ତେ ରବି ଅନନ୍ତେ ଉଦିତ,
ନୀରବେ ନିସର୍ଗ ଗାଏ ଜୀବନସଂଗୀତ ।
ଦୂରଗ୍ରାମପ୍ରାନ୍ତେ ବହେ କ୍ଷୀଣ-ତରଙ୍ଗିଣୀ,
ତା ତଟ-କୁଟୀରେ ସୁପ୍ତ ପଲ୍ଲୀସୀମନ୍ତିନୀ ।
ବସନ୍ତ କୋକିଳ ! ତନ୍ତ୍ର ପଞ୍ଚମ ରାଗିଣୀ
ଢାଳୁ; ନୀଳଗଗନରେ ବହେ ମନ୍ଦାକିନୀ ।
ଗାଉ "କୁହୁ" "କୁହୁ" ପିକ, କି ଅପୂର୍ବ ତାନେ !
ଜୀବନ-ଜାହ୍ନବୀଧାରା ବହେ ବିଶ୍ୱପ୍ରାଣେ ।
ଶୁଣନ୍ତେ ସୁନୀଳକେଶୀ ତରଳଲୋଚନା,
ପଦ୍ମ ଆସ୍ୟ ଟେକି ଗୃହେଁ ବିମ୍ବକଳବର୍ଣ୍ଣା ।
ଲାବଣ୍ୟ ନିର୍ମଳତନୁ ହୁଏ ଆନ୍ଦୋଳିତ,
ନବୀନ ବକ୍ଷୋଜ ପୀନ ମୃଦୁ ପ୍ରକମ୍ପିତ ।
ବାସନାବିକ୍ଷୁବ୍ଧ ପ୍ରାଣେ ଉଦ୍ଦାମ ଯୌବନେ
କି ବାରତା ଦେଉ ପିକ ! ସୁଦୂରେ ନିର୍ଜନେ ?

୨

ଥାଆନ୍ତା ମୋ ଗୀତେ ଯେବେ ତୋର ମଧୁରିମା,
ଥାଆନ୍ତା ମୋ ଗୀତେ ଯେବେ ସ୍ୱର୍ଗୀୟ ଗରିମା,

ପାର୍ଥିବ-ଅର୍ଥର କ୍ଷୁଦ୍ର ସୀମା ଅତିକ୍ରମି
ବିଶାଳ କଳ୍ପନା-ଦେଶେ ଦୂର ଦୂର ଭ୍ରମି
ଧବଳିତ ତେଜ ଘନ ନୀଳ ଗଗନେ
ଗାଆନ୍ତୁ ତୋ ସଙ୍ଗେ ଦିବ୍ୟ ଅମୃତନିଃସ୍ୱନେ ।
ଗୀତେ ମୋର ପ୍ରସ୍ଫୁରନ୍ତୁ ପ୍ରୀତି-ମଧୁରିମା,
ପ୍ରସ୍ଫୁରନ୍ତୁ ଜନ୍ମଭୂମି-ଅତୀତ-ମହିମା ।
ଶୁଣି ତା ଜାଗନ୍ତୁ ସୁପ୍ତ ଉତ୍କଳନନ୍ଦନ;
ତୋ ଗୀତେ ଜାଗଇ ଯେହ୍ନେ ବନ୍ଧୀସିସ୍କନ୍ଦନ ।
କିନ୍ତୁ ହାୟ ବୃଥା ଆଶା ! ମୋ ପ୍ରାଣର ଭାଷା
ଆବିଳସଲିଳା ଯେହ୍ନେ ନଦୀ କର୍ମନାଶା ।
ପିକ ତୋର "କୁହୂ" ଧ୍ୱନି ସ୍ୱର୍ଗମନ୍ଦାକିନୀ,
ତା ନୀର କରନ୍ତୁ ପାନ ପୁରସୀମନ୍ତିନୀ ।

ସମାପ୍ତ ।



Printed by V. Kar, The U. S. Press, Cuttack.